ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ରୁସ୍ତମ କାହାଣୀ





ଗ୍ରନ୍ଥ ମନ୍ଦିର

ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ରୁସ୍ତମ୍ କାହାଣୀ

ଅନୁବାଦକ :
ଡକ୍ଟର ଶୁଭେନ୍ଦ୍ରମୋହନ ଶ୍ରୀଚନ୍ଦନସିଂହ

ଗ୍ରନ୍ଥମନ୍ଦିର

## ସୂଚୀପତ୍ର

# ଜାଲ୍ ଓ ରୁଦାବେ

ପାରସ୍ୟର ଜଣେ ସମ୍ରାଟ୍‌ଙ୍କ ନାଁ ଥିଲା ମିନୁଚିର୍। ତାଙ୍କର ସେନାପତି ଥିଲେ ଜାହୋନ୍। ଜାହୋନ୍ ଥିଲେ ଖୁବ୍ ବୀର। ତାଙ୍କ ନାଁ ଶୁଣିଲେ ଶତ୍ରୁ-ଶିବିରରେ ଆତଙ୍କ ପଡୁଥିଲା। ସୈନ୍ୟ-ସାମନ୍ତ ସମସ୍ତେ ତାଙ୍କୁ ଶ୍ରଦ୍ଧା କରୁଥିଲେ, ସମ୍ମାନ ଦେଉଥିଲେ।

ମାତ୍ର ଜାହୋନ୍‌ଙ୍କ ମନରେ ଶାନ୍ତି ନଥାଏ। ତାଙ୍କର ଏତେ ଧନ-ସଂପଦ ଭୋଗ କରିବାକୁ ତାଙ୍କ ଘରେ ପିଲାଟିଏ ନଥାଏ। ସେ ବହୁ ଦେବଦେବୀଙ୍କି ଜଣାଇଲେ, ବହୁ ଗଣକ ଜ୍ୟୋତିଷୀଙ୍କି କହିଲେ। ଫଳ ସେମିତି କିଛି ହେଲାନି।

ଏମିତି ଅନେକ ଦିନ ଚାଲିଗଲା। ଶେଷରେ ତାଙ୍କ ଘର ଉଜ୍ଜ୍ୱଳ କରି ଜନ୍ମନେଲା ପୁଅଟିଏ। ଖୁବ୍ ସୁନ୍ଦରିଆ... ଖୁବ୍ ବଳୁଆ ପୁଅଟି; ଦିହହାତରେ ଯେମିତି ବଳ ଖୁନ୍ଦିହେଇ ରହିଛି। ଜାହୋନ୍ ପୁଅଟିକି ପାଇ ଖୁବ୍ ଖୁସିହେଲେ। ତାର ନାମ ରଖିଲେ ଜାଲ୍। ମାତ୍ର ସେ ଖୁସିରେ ଟିକେ ଦୁଃଖ ବି ଲୁଚିରହିଥେ। ଏ ପୁଅଟିର ମୁଣ୍ଡର କେଶ ନଥିଲା କଳା— ଏ କେଶଗୁଡ଼ିକ ଥିଲା ଧଳା... ବରଫପରି ଧଳା !! ଏଥିରେ ଜାହୋନ୍‌ଙ୍କ ମନରେ ଟିକେ ଖଟ୍‌କା ଲାଗୁଥେ। କ'ଣ ଗୋଟାଏ ଘଟିପାରେ ଏଇ ଆଶଙ୍କାରେ ସେ ତଟସ୍ଥ ଥାଆନ୍ତି। ଜାହୋନ୍‌ଙ୍କୁ ତ ପାରସ୍ୟର ସମସ୍ତ ଲୋକ ଶ୍ରଦ୍ଧାକରନ୍ତି। ପୁଅ ଜନ୍ମ ହେବାପରେ ସେମାନେ ତାଙ୍କ ଘରକୁ ଆସିଲେ। ତାଙ୍କୁ ବଧାଇ ଜଣାଇଲେ। ମାତ୍ର ପୁଅକୁ ଦେଖି ମୁହଁ ଶୁଖାଇଲେ। ଗଲାବେଳେ କହିଯାଉଥିଲେ, "ଇଏ ତ ମଣିଷଛୁଆ ପରି ଦିଶୁନି; କୋଉ ରାକ୍ଷସ ଏଠି ଜନମ ନେଇଚି। ବାପାର କ୍ଷତି କରିବ, ଏ କ୍ଷତି କରିବ ଏ ସାରା ଦେଶର। ଏମିତି ଶିଶୁର ଜନ୍ମ ଦେଶପାଇଁ କଲ୍ୟାଣକର ନୁହେଁ।"

ଯିଏ ଦେଖେ ଏମିତି କିଛି କହେ। ଧୀରେ ଏ କଥାଟି ଅନ୍ୟ

ଆକାର ନେଲା । ଶୁଭେଚ୍ଛାରୁ ମନ୍ଦକଥା ଆଡ଼କୁ ଗଲା । ଲୋକେ ପହିଲେ ଫୁସ୍‌ଫାସ୍ ହେଉଥିଲେ, ଏବେ ବଡ଼ପାଟିରେ କୁହାକୁହି ହୋଇ ଜାହୋନ୍‌ଙ୍କୁ ଶୁଣାଇଲେ । କେହି କେହି ନାନା ଅବାନ୍ତର କଥା ତାଙ୍କ ଆଗରେ କହିଲେ । କେହି କେହି ପିଲାଟିକି ମାରିଦେବାକୁ ଦାବିକଲେ ।

ଜାହୋନ୍ ବହୁ ବର୍ଷ ସନ୍ତାନହୀନ ରହିବା ପରେ ପୁଅଟିକି ପାଇଥିଲେ । ଏଣେ ଲୋକେ ନାନାକଥା କହିବାରୁ ତାଙ୍କ ମନରେ ଦୁଇଟି କଥା ଉଠିଲା । ଲୋକମାନଙ୍କ କଥାରୁ ସେ ଛୁଆଟିକି ଅମଙ୍ଗଳିଆ ବୋଲି ଭାବୁଥିଲେ । ହେଲେ ବି ସେ ତ ତାଙ୍କରି ପୁଅ । କେଜାଣି କାହିଁକି, ପିଲାଟି ଆଡ଼କୁ ତାଙ୍କର ମାୟା ଆଗଠୁ ବେଶି ବଢୁଥିଲା । ତା' ମୁହଁ ଆହୁରି ସୁନ୍ଦର ଦିଶୁଥିଲା ।

ଲୋକମାନଙ୍କ କଥା ଜାହୋନ୍ ଆଉ ସହିପାରିଲେନି । ଶେଷରେ ଦିନେ ସ୍ଥିର କଲେ ଛୁଆଟିକି ସେ ଜଙ୍ଗଲ ଭିତରେ ଛାଡ଼ିଦେବେ । ସେ ଯଦି ବଞ୍ଚିବାର ଥିବ, ବଞ୍ଚିଯିବ; ନାହିଁ ମରିବାର ଥିଲେ, ମରିବ । ଏଠି ରହିଲେ ସାଇପଡ଼ିଶା, ଆଉ ଆଉ ଲୋକେ ତାଙ୍କୁ ରଖେଇ ବସେଇ ଦେବେନି; ସବୁବେଳେ ନାନାକଥା କହିବେ ! ଜାହୋନ୍ କେତେ ସହିବେ ! କେତେ ସମ୍ଭାଳିବେ !

ସେ ଏଲ୍‌ବର୍ଜ ପାହାଡ଼କୁ ଗଲେ । ଛୁଆଟିକି ସେଇଠି ଗୋଟେ ପଥର ଉପରେ ଶୁଆଇଦେଲେ । ସେଠି ଜନମାନବର ଗତାଗତ ନାହିଁ । ସେଠି ଅଛନ୍ତି ବଣର ପଶୁପକ୍ଷୀ, ଚିତା, ବଣ-ଛେଳି ଇତ୍ୟାଦି. . .!!

ଦେବତାମାନେ ଏ କଥା ଦେଖୁଥିଲେ । ସେମାନେ ଚାହାନ୍ତିନି ଯେ, ଶିଶୁ ଜାଲ୍‌ର କ୍ଷତି ହେଉ । ସେମାନେ ଚାହାନ୍ତିନି ଜାଲ୍‌ର ମୃତ୍ୟୁ । ସେଇଠୁ ସେମାନେ ପଠାଇଲେ ସିମୁର୍ଗକୁ । ସିମୁର୍ଗ ଗୋଟିଏ ସାଧାରଣ ଜୀବ ନୁହେଁ । ବିରାଟ ଜୀବ ସେ । ମୁହଁଟିରେ ଶୁଆର ଥଣ୍ଟ । ଡେଣା ଈଗଲ୍‌ର ଡେଣା ପରି । ଅଥଚ୍ ଏହାର ଦେହଟି ପଶୁର ଦେହ । ଇଏ ଗୋଟିଏ ସ୍ୱର୍ଗର ଜୀବ ।

ସିମୁର୍ଗ ଉଡ଼ିଆସିଲା ଏଲ୍‌ବର୍ଜର ପାଦଦେଶକୁ । ଦେଖିଲା— ଶିଶୁ ଜାଲ୍‌କୁ । ସେ ତାକୁ ବୋହିନେଲା । ସିମୁର୍ଗ ରହେ ଚନ୍ଦନ ବନରେ । ସେଠି ତାର ବିରାଟ ଘର । ସେଇ ଘରେ ସିମୁର୍ଗ ତା' ସ୍ତ୍ରୀକୁ

ନେଇ ରହେ ।

ପିଲାଟିକି ଧରି ସିମୁର୍ଗ ଉଡୁଥାଏ । ହଠାତ୍ ଗୋଟାଏ ଅଶରୀରୀ ବାଣୀ କହିଉଠିଲା –

"କୁହୁକ ପକ୍ଷୀ, କୁହୁକ ପକ୍ଷୀ,
ଏଇ ଛୁଆକୁ ଯତନେ ନିଅ,
ଯତନେ ତାକୁ ପାଳିବ ଘରେ
ଯତନେ ତାକୁ ପାଠ ପଢ଼ାଅ ।
ପୂରୁବ ଦେଶ ଆଲୁଅସମ
ଏଇ ଦେଶର ତାରକାଭଳି,
ଏହାରି ପୁଅ ସାରାଜଗତେ
ଆଗୁଆ ହେବ, ଉଠିବ ଜଳି ॥"

ସିମୁର୍ଗକୁ ବହୁତ କଥା ଜଣା । ସେ ଭୂତ ଭବିଷ୍ୟତ କଥା ବି ଜାଣେ । ସେ ଜାଣିପାରିଲା, ଏ ଶିଶୁଟି ସାମାନ୍ୟ ଶିଶୁ ନୁହେଁ । ଦିନେ ଏହାରି ପୁଅ ହେବ 'ପୂର୍ବଦେଶର ଆଲୋକ', 'ପାରସ୍ୟର ତାରା' ଆଉ 'ପୃଥିବୀର ବୀର' । ସେ ଜାଲ୍‌କୁ ଯତ୍ନ ଆଦରରେ ବଢ଼ାଇଲା । ତାକୁ ବହୁକଥା ପଢ଼ାଇଲା । ଆଉ ସେ ଦେଶର ପିଲାମାନଙ୍କ ସହ ଲଢ଼ାଇଲା । ଜାଲ୍ ସବୁ ବିଦ୍ୟାରେ ହେଲା ପାରଙ୍ଗମ ।

ଜାଲ୍ ଅନେକ ସମୟରେ ଏଲ୍‌ବର୍ଜର ଚୂଳରେ ଖେଳାଖେଳି କରେ; ବୁଲାବୁଲି କରେ । ତା' ପାଖେ ପାଖେ ତାକୁ ଜଗିରହିଥାଏ ସିମୁର୍ଗ ।

ତଳେ ଦୂରରୁ ଲୋକେ ଏ କଥା ଦେଖିବାକୁ ପାଇଲେ । ନିଜ ନିଜ ଭିତରେ ସେମାନେ କଥାଭାଷା ହେଉଥିଲେ ଏଲ୍‌ବର୍ଜ ଶିଖରରେ ସିମୁର୍ଗ ଗୋଟାଏ ମଣିଷଛୁଆକୁ ପାଳିଚି ।

ଜାହୋନ୍ ବିଚାରା ବଡ଼ ଦୁଃଖରେ ଥାଆନ୍ତି । ଏବେ ତାଙ୍କର ଘର ଶୂନ୍ୟ । ଭଗବାନ୍ ତାଙ୍କୁ ଆଉ ପୁଅପୁତା ଦେଲେନି । ଜାଲ୍ ପରେ ପରେ ତାଙ୍କ ମନଟା ଭାଙ୍ଗିଗଲା । ଅନେକ ସମୟରେ ସେଇ ଧଳାମୁଣ୍ଡିଆ ପିଲାଟି ତାଙ୍କର ଆଖିରେ ଭାସିଉଠୁଥାଏ; ସତେ ଯେପରି ସିଏ କାନ୍ଦୁଚି, ସିଏ ଡାକୁଚି । ଅଥବା ତାକୁ କୋଉ ପଶୁ କି ପକ୍ଷୀ କାମୁଡ଼ି ଦେଲାଣି ! ଏପରି ଅନେକ ପ୍ରକାର ଭଲମନ୍ଦର ଚିନ୍ତାରେ

ଜାହୋନ୍ ଗୋଟାଏ ଅଶାନ୍ତ ଜୀବନ କଟାଉଥାଆନ୍ତି । ଏତେ ଧନଦରବ, ଏତେ ମାନସମ୍ମାନ ! ଏସବୁ କୋଉଥିପାଇଁ ! ଯିଏ ଏସବୁ ଭୋଗକରିବ, ସିଏ ତ ନାଇଁ । ପୁଅ ତ ନାଇଁ ।

ଏପରି ଅବସ୍ଥାରେ ଦିନେ ସେ କ'ଣ ଗୋଟେ ସ୍ୱପ୍ନ ଦେଖିଲେ । ସେଇ ସ୍ୱପ୍ନରେ ସେ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ଯେଉଁମାନେ ସ୍ୱପ୍ନକଥା ଜାଣନ୍ତି, ସେମାନଙ୍କୁ ପଚାରିଲେ । ସେମାନେ କହିଲେ, "ଏ ହେଉଚି ଆପଣଙ୍କ ଜାଲ୍ ବିଷୟରେ ସ୍ୱପ୍ନ । ଜାଲ୍ ମରିନି — ସେ ବଞ୍ଚିଚି — ସେ ଭଲରେ ଅଛି ।"

ଏକଥା ଶୁଣି ଜାହୋନ୍ ଆହୁରି ଚଞ୍ଚଳ ହୋଇଗଲେ । ଆହା, କି ଅନ୍ୟାୟ ସେ ଛୁଆଟି ପ୍ରତି କରିନାହାନ୍ତି ! ସେଇ ସରଳ ଛୁଆଟିକୁ ସେ ଯେ ଜଙ୍ଗଲ ଭିତରେ ଛାଡ଼ିଦେଇଥିଲେ ! ସେଠି କିଏ ଥିଲା ତା'ର ! କେମିତି ସେ ଚଳିଥିବ । କେମିତି ବଞ୍ଚିଥିବ । ଏ ପଣ୍ଡିତମାନେ କହୁଛନ୍ତି, ସେ ବଞ୍ଚିଚି । ତାଙ୍କ ପ୍ରାଣ ଆକୁଳ ହେଇଗଲା । ପୁଅର କଥା ସବୁବେଳେ ତାଙ୍କ ଆଗରେ ନାଚିଲା । ସେ ତାଙ୍କର ଚାକରମାନଙ୍କୁ ପଠାଇଲେ । ସେମାନେ ପାହାଡ଼ଟା ରଛାଳି ପକାଇଲେ; ବହୁତ ଖୋଜାଲୋଡ଼ା କଲେ — ମାତ୍ର ପାଇଲେନି । ଖାଲିହାତରେ ଫେରିଆସିଲେ ।

ଏଥିରେ ଜାହୋନ୍‌ଙ୍କ ମନ ମାନିଲାନି । ସେ ଖୁବ୍ ଚିନ୍ତିତ ହେଇପଡ଼ିଲେ । ସେ ସମୟରେ ସେ ଆଉ ଗୋଟେ ସ୍ୱପ୍ନ ଦେଖିଲେ । ଗୋଟାଏ ଅଦ୍‌ଭୁତ ସୈନ୍ୟଦଳ ଆସୁଚି । ଓଃ ! କେତେ ସୈନ୍ୟ ସେଥିରେ ! ଆଖି ପାଉନି. . . ସେମାନଙ୍କ ସଂଖ୍ୟା ! ସେମାନଙ୍କ ଆଗରେ ଜଣେ ବୀର ଯୁବକ ଅଛି । ସୁନ୍ଦର ଦିହମୁହଁ । ମୁଣ୍ଡର ବାଳଗୁଡ଼ିକ ଧଳା ! ସେଇ ବୀର ଗୋଟାଏ ଚମତ୍କାର ଘୋଡ଼ାରେ ବସିଚି । ତା' ପାଖରେ ଜଣେ ସନ୍ନ୍ୟାସୀ । ସେ ସନ୍ନ୍ୟାସୀ ଜାହୋନ୍‌କୁ କହୁଥିଲେ, "ଆହେ, ଚିହ୍ନିପାରୁଚ . . . ଚିହ୍ନିପାରୁଚ ଏହାଙ୍କୁ ! ଏ ହେଉଛନ୍ତି ବୀରମାନଙ୍କ ଶିରୋମଣି । ଦେଖୁନ ଏହାଙ୍କ ତେଜ ! ଆଉ ଜାଣ, ଏ ହେଉଛନ୍ତି ସେଇ ଜାଲ୍ . . . ଯାହାଙ୍କୁ ଛାଡ଼ିଆସିଥିଲ ଏଲ୍‌ବର୍ଜର ଜଙ୍ଗଲ ଭିତରେ ! ବାପ ହେଇଚ ତମେ ! ଲାଜ ଲାଗୁନି ! ଏମିତି ପୁଣି ବାପ ଅଛନ୍ତି ! ଅଥଚ ଦେଖ, ସେ ପିଲା ମରିନି । ସେ ମରିବାରୁ ଉବୁରିଯାଇଚି ।

ମନେରଖ, ଏଇ ପିଲା ଦିନେ ସାରା ଦେଶର ନାଁ ରଖିବ। ଆହୁରି ମନେରଖ, ଦେବତାମାନେ ଏହାର ସପକ୍ଷରେ ଅଛନ୍ତି। ସେଇଥିପାଇଁ ସେ ପିଲା ଏଯାଏଁ ବଞ୍ଚିରହିଛି!"

ଜାହୋନ୍‌ଙ୍କ ନିଦ ଭାଙ୍ଗିଗଲା। ସେ ଆଉ କାଳବିଳମ୍ବ କଲେନି। ସେ ନିଜେଇ ବାହାରିପଡ଼ିଲେ ଏଲ୍‌ବର୍ଜକୁ। ବିରାଟ ପର୍ବତ! ବୁକୁରେ ତା'ର କେତେ କେତେ ଗଛଲତାର ଗହନ ବନ! ପଶୁ ପକ୍ଷୀ ଭରିଚନ୍ତି। କେମିତି ସେ ପାଇବେ ତାଙ୍କର ପୁଅକୁ! ଖୋଜାଖୋଜି କଲେ ଅନେକ। କ୍ଳାନ୍ତ ହେଇପଡ଼ିଲେ। ତା'ପରେ ଯୋଉ ପଥର ଉପରେ ଶୁଆଇ ସେ ପୁଅକୁ ଛାଡ଼ିଯାଇଥିଲେ, ସେଇ ପଥର ଉପରେ ବସିପଡ଼ିଲେ। ତାଙ୍କ ଆଖିରୁ ଧାର ଧାର ଲୁହ ଝରିପଡ଼ିଲା। ସେ ଦେବତାମାନଙ୍କୁ ପ୍ରାର୍ଥନା ଜଣାଇଲେ। କାନ୍ଦି କାନ୍ଦି ସେମାନଙ୍କ କରୁଣା ଭିକ୍ଷାକଲେ, "ହେ ଦେବତା, ମୋର ସବୁ ଦୋଷ କ୍ଷମାକର। ଅତୀତରେ ବହୁତ ପାପ କରିଚି। ମୋ ପୁଅ ପ୍ରତି ବହୁତ ଅନ୍ୟାୟ କରିଚି। ମୋର ଏ ସବୁ ଦୋଷ କ୍ଷମାକର!!" ଛୋଟ ଛୁଆଟିଏ ପରି ସେ ପାଟିକରି କାନ୍ଦିଉଠିଲେ। ଚନ୍ଦନବନର ବସାରେ ଥାଇ ସିମୁର୍ଗ ଏ କାନ୍ଦ ଶୁଣିପାରିଲା। ତା' ମନରେ ଆସିଲା ଦୟା। ସେ ଜାଲ୍‌କୁ ପିଠିରେ ବସାଇଲା— ନେଇଆସିଲା ଏଲ୍‌ବର୍ଜର ତଳକୁ।

ବାଟରେ ସେ ବୁଝାଉଥାଏ ଜାଲ୍‌କୁ, "ବାବୁ ରେ, ତୁ ଏବେ ଫେରିଯା ତୋ' ବାବାଙ୍କ ପାଖକୁ। ଫେରିଯା' ତମ ନିଜ ଲୋକମାନଙ୍କ ପାଖକୁ। ତୁ ଏବେ ବଡ଼ ହେଇଗଲୁଣି। ସେଠି, ତମର ସେଇ ସମାଜରେ ତତେ ବହୁତ କାମ କରିବାକୁ ହେବ। ତେଣୁ ମୁଁ ତତେ ଫେରାଇଦେଉଚି। ଫେରାଇଦଉଚି ତୋର ଜନ୍ମଦାତା ହାତରେ।"

ସେମାନେ ଜାହୋନ୍‌ଙ୍କ ପାଖରେ ପହଞ୍ଚିଗଲେ। ସିମୁର୍ଗ କହିଲା, "ବାବୁ, ଏଇ ତୋର ବାବା।"

ସିମୁର୍ଗ ଜାହୋନ୍‌କୁ କହିଲା, "ଏତେ ଦିନ ଧରି ଏ ପିଲାଟିକି ପାଳିଥିଲି। ତାକୁ ସବୁକଥା ଶିଖାଇଚି। ତୁମେ ସିନା ଦୟାହୀନ ଭାବରେ ତାକୁ ଛାଡ଼ିଦେଇ ଚାଲିଗଲ; ସିଏ ଥିଲା ମୋର ଛୁଆ! ଏବେ ଏହାକୁ ତୁମକୁ ଫେରାଇଦେଉଚି। ସେଥିସହ କହିରଖୁଚି, ଏହାର

ଉପଯୁକ୍ତ ଯତ୍ନ ନେବ। ଏ ଜଣେ ସାଧାରଣ ପିଲା ନୁହେଁ।''

ଜାଲ୍ ଏ କଥା ଶୁଣି ଦୁଃଖରେ ଭାଙ୍ଗିପଡ଼ିଲା। ଅତି ଛୁଆଟିଦିନରୁ ସେ ସିମୁର୍ଗକୁ ନିଜର ସବୁ ବୋଲି ଜାଣିଥାଏ। ଆଜି ସେଇ ପକ୍ଷୀ ପିତା, ସେଇ ଚନ୍ଦନବନର ବସା ସବୁ କିଛି ଦୂରହେବ। ସିଏ ଆଉ ସିମୁର୍ଗକୁ ଦେଖିବନି। ସେ ସିମୁର୍ଗକୁ କୁଣ୍ଢାଇ କାନ୍ଦିଲା। ସିମୁର୍ଗ ତାକୁ ଅନେକ ବୁଝାଇଲା। କହିଲା –

''ନିଜ ବାପଭାଇ ପାଖେ ଯିବ ବାବୁ ଜାଲ୍,
ଭୁଲିବନି ଆମକୁ ହେ କାଳକ କେବଳ।
କରଇ ଆଶିଷ ତୁମେ ହୁଅ ଯଶଃଶାଳୀ,
ତମ ପାଦତଳେ ପଡୁ ଶତ୍ରୁଶିର ବଳି।''

ତା'ପରେ ଛାତିପାଖରୁ ତିନିଗୋଟି ପର ଉପାଡ଼ିଦେଲା। ସେ ପିଲାଟି ହାତରେ ଧରାଇଦେଇ କହିଲା –

''ତିନୋଟି ପର ମୋ' ନେଇଥିବୁ ବାବୁ,
ପାଖେ ପାଖେ ସଦା ରଖିଥିବୁ
ବିପଦ ପଡ଼ିଲେ ନିଆଁରେ ପକାଇ
ସିମୁର୍ଗର ନାଆଁ ସୁମରିବୁ।
ତାହାହେଲେ ମୁଇଁ ଆସିବି ରେ ଧାଇଁ
ବିପଦ ତୋହର ହେବ ଦୂର,
ଯାଉଚି ଏଥର ମେଲାଣି ଦିଅ ରେ
ଫେରିଯାଅ ତୋ'ର ବାବାପୁର।''

ସିମୁର୍ଗ ଜାଲଠୁଁ ମେଲାଣି ନେଲା। ଜାହୋନ୍‌ଙ୍କଠୁଁ ବିଦାୟ ମାଗିଲା। ତା'ପରେ ତୀବ୍ର ଗତିରେ ଉଡ଼ିଗଲା। ବାପ ପୁଅ ଦିହେଁ ବ୍ୟାକୁଳ ଭାବେ ସେ ଆଡ଼କୁ ଚାହିଁରହିଲେ। ତା'ପରେ ଜାହୋନ୍ ପୁଅକୁ ନେଇ ଘରକୁ ଫେରିଲେ। ଅଳ୍ପଦିନ ଭିତରେ ସମସ୍ତେ ଜାଣିଗଲେ ଏ କାହାଣୀ।

ଜାହୋନ୍ ଜାଲ୍‌କୁ ରାଜକୁମାରମାନଙ୍କ ଗହଣରେ ଛାଡ଼ିଦେଲେ। ରାଜା ମିନୁଚିର୍ ଜାଲ୍‌କୁ ବହୁତ ସୁଖପାଇଲେ। ସେ ତା'ର ବିଭିନ୍ନ କାର୍ଯ୍ୟକଳାପ ଦେଖିଲେ। ତାର ବୀରତ୍ୱରେ ଖୁସି ହେଇଗଲେ। ତାକୁ

ସୁନାର ଗଦା, ସୁନାର ମୁକୁଟ ଦେଲେ। ରାଜକୁମାରମାନଙ୍କ ଭିତରେ ଜାଲ୍‌ର ନାଁ ଖୁବ୍ ବଢ଼ିଗଲା। ମୁଲକର ପଣ୍ଡିତମାନଙ୍କୁ ଡକାହେଲା। ସେମାନେ ତାହାର କୋଷ୍ଠୀ ଦେଖିଲେ। କହିଲେ, "ଏ କାଳର ସବୁଠୁ ବଡ଼ ବୀର ହେବ ଏ ବାଳକ। ଏଥିରେ ମିନୁଚିର୍ ଆହୁରି ଖୁସି ହେଲେ। ସିଏ ଚାହୁଁଥିଲେ, ତାଙ୍କ ଦେଶରେ ବଡ଼ବଡ଼ ଯୋଦ୍ଧାସବୁ ରହନ୍ତୁ। ତା'ହେଲେ, ଶତ୍ରୁମାନଙ୍କ ଉତ୍‌ପାତ ରହିବନି। ଦରକାର ହେଲେ ଦେଶର ସୀମାଟା ବେଶ୍ ଆହୁରି ବଢ଼େଇ ଦେଇ ହେବ। ସମ୍ରାଟ୍ ଖୁସିରେ ତାହାର ବାପାଙ୍କୁ ସାମନ୍ତ ରାଜା କରିଦେଲେ। ସେ ଜାବୁଲିସ୍ଥାନ, ଇଂଦ୍ ଆଉ କାବୁଲ୍‌ର ମାଲିକ ହେଲେ। ତାହାଙ୍କୁ ଦିଆଗଲା ଅନେକ ଘୋଡ଼ା। ରାଜାଙ୍କର ସିଏ ହେଲେ ସବୁଠୁ ବିଶ୍ୱାସୀ ସେନାପତି, ବିଶ୍ୱାସୀ ସାମନ୍ତ। ସୀମାନ୍ତ ଅଞ୍ଚଳର ଅଧିକାରୀ ହେଇ ସେ ରହିଲେ। ସାଙ୍ଗରେ ରହିଲା ଜାଲ୍।

ଜାଲ୍‌କୁ ଡର ନାହିଁ। ସିଏ ଜାବୁଲିସ୍ଥାନର ନାମଜାଦା ସ୍ଥାନୀ ଲୋକଙ୍କ ସହ ମିଶାମିଶି କରେ। ସେମାନଙ୍କ ସହ ବହୁତ ଆଳାପ-ଆଲୋଚନା କରେ। ତାକୁ ଭଗବାନ୍ ଅନେକ ବୁଦ୍ଧି ଦେଇଥିଲେ। ଆଉ ସେଇ ବୁଦ୍ଧି-ବୃତ୍ତି ତା'ର ବଢ଼ିବଢ଼ି ଗଲା। ସବୁଠି ତାହାର ପ୍ରଶଂସା। କୋଉ କଥା ଜାଲ୍‌କୁ ଅଜଣା ନାହିଁ। ଯୁଦ୍ଧବିଦ୍ୟା, ଘୋଡ଼ାଚଢ଼ା, ପହଁରା, ଶାସ୍ତ୍ର ପୁରାଣ, ନୀତିକଥା ସବୁଥିରେ ସେ ପାରଙ୍ଗମ। ସବୁରି ମୁହଁରେ କେବଳ ତାହାରି କଥା।

ଜାହୋନ୍ ବେଳେବେଳେ ବାହାରକୁ ଯାଆନ୍ତି। କୋଉଠି ଗୋଳମାଳ ହେଲା କି ଅସୁରମାନେ ଆବୁରା ପଡ଼ିଲେ, ତାଙ୍କୁଇ ଯିବାକୁ ପଡ଼େ। ସେ ସମୟରେ ଶାସନକାମ ପଡ଼େ ଜାଲ୍ ହାତରେ। ଆଉ ସେ ସମୟରେ ସେ ଯେମିତି ବଢ଼ିଆ ଭାବରେ ଶାସନକାମ ଚଳାଏ, ସମସ୍ତେ ତାଜୁବ୍ ହୋଇଯାଆନ୍ତି। ପ୍ରଜାପାଟକ, ମନ୍ତ୍ରୀ, କଟୁଆଳ ସମସ୍ତେ ଖୁସି। ରାଇଜଗୋଟାରେ ତାହାରି କଥା, ତାହାର ପ୍ରଶଂସା ମାଡ଼ିଯାଏ। ବାବା ଏ କଥା ଜାଣନ୍ତି। ତାଙ୍କ ଛାତି ଖୁସିରେ ପୂରିଯାଏ।

ଥରେ ଜାହୋନ୍‌ଙ୍କୁ ବହୁତ ଦୂରକୁ ଯିବାକୁ ହୋଇଥାଏ। ଅନେକ ଦିନଧରି ସେ ସୀମାନ୍ତ ଅଞ୍ଚଳରେ ରହିଲେ। ସାରା ମୁଲକର ଶାସନ

ରହିଲା ଜାଲ୍ ହାତରେ। ଏତେ ବଢ଼ିଆଭାବେ ସିଏ ଶାସନ ଚଳାଇଲା ଯେ, ଚାରିଆଡ଼େ ଧନ୍ୟ ଧନ୍ୟ ଡାକ ଉଠିଲା।

ରାଜଧାନୀରେ ରହି ଖାଲି ଶାସନ ଚଳାଇଲେ ହେବନି। ତେଣୁ ଜାଲ୍ ତାଙ୍କ ମୂଲକର ବିଭିନ୍ନ ଜାଗାକୁ ଗଲା। ଏମିତି ସେ ଯାଇ କାବୁଲ୍‌ରେ ପହଞ୍ଚିଲା। ସେଠି ଗୋଟିଏ ନଈର କୂଳରେ ଜାଲ୍‌ର ତମ୍ବୁ ପଡ଼ିଥାଏ। କାବୁଲ୍ ପାରସ୍ୟର ଗୋଟିଏ ସାନ ରାଜ୍ୟ। ଏ ରାଜା ପାରସ୍ୟ ଅଧୀନରେ; ପାରସ୍ୟର ସମ୍ରାଟ୍‌ଙ୍କୁ କର ଦିଅନ୍ତି। ସେତେବେଳେ ସେଠି ରାଜା ଥାଆନ୍ତି ମିହିରାବ୍।

ମିହିରାବ୍‌ଙ୍କ ପୂର୍ବପୁରୁଷ ଥିଲେ ଜୋହକ୍। ଜୋହକ୍ ଦିନେ ବଡ଼ ପ୍ରତାପୀ ଥିଲେ। ଏ ଥିଲେ ପାରସ୍ୟଗୋଟାର ମାଲିକ। ତାଙ୍କଠୁ ଏବର ସମ୍ରାଟ୍‌ଙ୍କ ପୂର୍ବ ବଂଶଧରମାନେ ରାଜ୍ୟ ନେଇଥିଲେ। ତେଣୁ ଦୁଇ ବଂଶ ଭିତରେ ଭଲ ପଡୁନଥାଏ। ଆଉ ମିହିରାବ୍‌ଙ୍କ ଜେଜେ ଫିରିଦୁନ୍‌ଙ୍କ ଶରଣ ପଶିଲେ। ସେଇଠୁ ସେମାନଙ୍କୁ ଏ କାବୁଲ୍ ମୂଲକ ମିଳିଥାଏ। ପୁଅନାତି ଧରି ସେମାନେ କାବୁଲ୍‌ର ଶାସନ କରୁଥାନ୍ତି। ମାତ୍ର ପାରସ୍ୟ ସମ୍ରାଟ୍ ଏହାଙ୍କ ନାଁ ଶୁଣିଲେ ଚମକନ୍ତି। ଏହାଙ୍କ ସହିତ କୌଣସି ପ୍ରକାର ସଂପର୍କ ନଥାଏ। ଆଉ କିଏ ଯଦି କାବୁଲର ମିହିରାବ୍‌ଙ୍କ କଥା କହେ, ସେ ରାଗି ନିଆଁ !!

ଜାଲ୍ କାବୁଲ୍‌ରେ ପହଞ୍ଚିଲେ। ତାଙ୍କ ଆସିବା ଖବର ମିହିରାବ୍ ଜାଣିଲେ। ଜାଲ୍ ବି ମିହିରାବ୍‌ଙ୍କ ବିଷୟରେ ଅନେକ କଥା ଜାଣିଲେ। ମିହିରାବ୍‌ଙ୍କର ଝିଅଟିଏ ଥାଏ। ନାଁଟି ତା'ର ରୁଦାବେ। ରୁଦାବେ ଥିଲା ରୂପର ରାଣୀ। ତା' ରୂପର ଆଲୁଅରେ କାବୁଲ୍‌ର ରାଜବାଟୀ ଉଜ୍ଜ୍ୱଳି ଯାଉଥିଲା। ହାତୀଦାନ୍ତଠୁ ବଳି ଧଳା ତା'ର ଦିହ। ତା' ମୁଣ୍ଡର କେଶ ଡାମରା କୁଆର ପରଠୁ କଳା। ସେ କେଶ ପୁଣି କେତେ ଲମ୍ବା ! ତା' ଗାଲ ଥିଲା ଡାଳିମ୍ବଫୁଲପରି ଲାଲ୍ ଟୁକୁଟୁକୁ।

ଏଇ ଅପୂର୍ବ ସୁନ୍ଦରୀର କଥା ଶୁଣି ଜାଲ୍‌ର ମନରେ ଅନେକ ଭାବନା ଆସିଲା। ମାତ୍ର ସେସବୁ ଭାବନାକୁ ସେ ନିଜର ଆୟତ୍ତରେ ରଖିଲା। ସେ ଜାଣେ, ପାରସ୍ୟ ସମ୍ରାଟ୍ ଏ ବଂଶକୁ ଦେଖିପାରନ୍ତିନି। ସେ କିଆଁ ଯିବ କାବୁଲ୍ ରାଜବାଟୀକି? ସେ କିଆଁ ଇଚ୍ଛା କରିବ

ରୁଦାବେଙ୍କୁ ଦେଖିବାକୁ? ସେ ନିଜକୁ ଦୂରେଇ ରଖିଲା। ସେ ଆସିଚି ପ୍ରଜାମାନଙ୍କ ସୁଖଦୁଃଖ ଦେଖିଯିବାକୁ! ସେଇଆ ସେ କରିବ!

ମିହିରାବ୍ ଜାଲ୍‌କୁ ଭେଟିବାକୁ ଯାଆନ୍ତି। ଏଇ ତ ଭଦ୍ରତା। ଜାଲ୍ ତାଙ୍କର ମାଲିକ। ଯୁବକ ଜାଲ୍‌ର କଥାଭାଷା, ଚାଲିଚଳନ, ରୂପଭେକ ମିହିରାବ୍‌ଙ୍କୁ କିଣିନେଲା। ମିହିରାବ୍ ଜୀବନରେ ଅନେକ ଲୋକଙ୍କୁ ଦେଖିଥିଲେ, ଅନେକ ଲୋକଙ୍କ କଥା ଶୁଣିଥିଲେ; ମାତ୍ର ଜାଲ୍‌ପରି ଯୁବକଟିଏ ସେ ସ୍ୱପ୍ନରେ ବି ଭାବି ପାରିନଥିଲେ— ସତେ ଯେପରି ସିଏ ଜଣେ ଦେବପୁରୁଷ।

ମିହିରାବ୍ ଏଇ କଥାସବୁ ତାଙ୍କ ସ୍ତ୍ରୀଙ୍କି ଓ ଝିଅକୁ କହିଲେ। ରୁଦାବେର ମନରେ ଜାଲ୍ ଜାଲ ବିଛାଇ ବସିଲା। ଜୀବନରେ ଗୋଟିଏ ପଲକଲାଗି କେହି କାହାକୁ ଦେଖିନି, ଦେଖିବାର ସୁଯୋଗ ବି ନଥାଏ— ଅଥଚ ରୁଦାବେ ମନେମନେ ଜାଲ୍‌କୁ ନିଜର ସ୍ୱାମୀ ବୋଲି ଧରିନେଲେ। ଦିନରାତି ତାହାକୁ ଝୁରିଲେ। ଏ କଥା ସାଙ୍ଗ ସହଚରୀମାନଙ୍କୁ କହିଲେ। ସେମାନେ ରୁଦାବେଙ୍କୁ ବହୁତ ବୁଝାଇଲେ— ସିଏ ଆକାଶର ଚାନ୍ଦ। ଚାନ୍ଦକୁ ଦେଖିହୁଏ। ସେ ଚାନ୍ଦର କିରଣନେଇ ଗୀତ ଲେଖି ହୁଏ। ଚାନ୍ଦକୁ ଧରିହୁଏନି। ଜାଲ୍ ସେମିତି।

ରୁଦାବେ ଶୁଣିଲେନି। ସିଏ କହିଲେ, ''ଭୁଲ୍‌ରେ ହେଉ କି ଠିକ୍‌ରେ ହେଉ, ଜାଲ୍ ମୋ'ପାଇଁ ସବୁ। ତୁମେ ସବୁ ଜାଣିରଖ, ଜାଲ୍‌ଙ୍କ ବିନା ମୁଁ ମରିଯିବି। ମୋ' ଜୀବନର କିଛି ମୂଲ୍ୟ ନାହିଁ।''

ସହଚରୀମାନେ ଏ କଥାରେ ଡରିଗଲେ। ମାତ୍ର ରଜାଝିଅର ଜୀବନକଥା ଭାବି ସେମାନେ ଚିନ୍ତିତ ହେଲେ। ସେମାନେ ନିଜ ନିଜ ଭିତରେ ଠିକ୍ କଲେ, ରୁଦାବେଙ୍କୁ କେମିତି ହେଲେ ସାହାଯ୍ୟ କରିବେ।

ସେଇଠୁ ସେମାନଙ୍କ ମଧ୍ୟରୁ କେତେ ଜଣ ଗଲେ ସେଇ ନଦୀକୂଳକୁ। ସେଠି ଅନେକ ଗୋଲାପ ଫୁଲ। ଜାଲ୍‌ଙ୍କ ତମ୍ବୁ ପାଖରେ ପ୍ରଚୁର ଗୋଲାପ। ସେମାନେ ଗଲେ ତମ୍ବୁ ପାଖକୁ ଫୁଲତୋଳି। ତମ୍ବୁରେ ବସିଥିଲେ ଜାଲ୍। ମନରେ ଅନେକ ଚିନ୍ତାର ବୁଢ଼ିଆଣୀ ଜାଲ। ତା'ରି ଭିତରେ ସେ ଛନ୍ଦିହୋଇ ପଡ଼ିଥିଲେ। ହଠାତ୍ କାନରେ ବାଜିଲା ଏ ଝିଅଗୁଡ଼ିକର ହସ, ଗୀତ ଆଉ କଥାଭାଷା। ତାଙ୍କର ଚାକରକୁ

ପଠାଇଲେ– ''ଯାଆ... ବୁଝିଆସ। କିଏ ଏ ବାଳିକାମାନେ! ଏଠାକୁ ଆସିଛନ୍ତି କାହିଁକି ?''

ଚାକରଟି ଯାଇ ଫେରିଆସିଲା। ସଙ୍ଗରେ ନେଇଆସିଲା ଏକ ବିଚିତ୍ର ଖବର। ସେ ଝିଅମାନେ କହିଲେ–

''ସୁକୁମାରୀ ରାଜକୁମାରୀ
ସହଚରୀ ସକଳେ,
ଆସିଥିଲେ ଫୁଲତୋଳିବେ
ହାର ଘେନିବେ ଗଳେ।
ରାଜଜେମା ତାଙ୍କୁ ଝୁରଇ,
ଭାବି ଦିବସ ରାତି,
କି ଭାବଇ ମନେ କୁମର
କେହି ଜାଣି ନାହାନ୍ତି।

ଜାଲ୍‌ଙ୍କ ମନରେ କେତେ କଳ୍ପନା ଆସିଲା। ସିଏ ଫୁଲ ପଠେଇଲେ। ରେଶମର ପୋଷାକପତ୍ର ଆଉ କେତେ ରତ୍ନ ଅଳଙ୍କାର ବି ପଠେଇଲେ।

ରୁଦାବେଙ୍କ ଆନନ୍ଦ କହିଲେ ନସରେ। ସିଏ ଖୁସିରେ ଗୀତ ଗାଇଲେ, ନାଚିଲେ। ଆଉ ସାଥୀମାନଙ୍କୁ କହିଲେ, ''ଜାଲ୍‌ଙ୍କ ସହିତ କେମିତି ଦେଖାହେବ ?''

ଇଏ ଗୋଟେ ଅସମ୍ଭବ କାମ– ଏଥିରେ ମହାବିପଦ ଅଛି। ମିହିରାବ୍ ଜାଣିବେ। ଲୁଚେଇ ଦେଖା ହେଇପାରିବନି। ରାଜବାଟୀ ଭିତରେ ଜାଲ୍‌ଙ୍କୁ ଦେଖିବା ଅସମ୍ଭବ।

ଏଥର ସହଚରୀମାନେ ଗୋଟାଏ ବୁଦ୍ଧି କଲେ। କହିଲେ, ''ବାବାଙ୍କୁ କହି ଛୁଟି ନିଅ। କିଛିଦିନ ବୁଲିଯିବ– ପାଖରେ ଗୋଟାଏ କିଲାରେ ରହିବ। ଜାଲ୍‌ଙ୍କୁ ସେଠାକୁ ଡାକିବା।''

ସବୁ ସଙ୍ଗିନୀ ଏମିତି ବିଚାର କଲେ। ରୁଦାବେଙ୍କୁ ଅନୁମତି ମିଳିଗଲା। ସେମାନେ ସେଇ ନଦୀ ପାଖରେ ଗୋଟାଏ କିଲାରେ ଯାଇ ରହିଲେ। ଜାଲ୍‌ଙ୍କ ପାଖକୁ ଖବର ଗଲା। ସେ ଯାଇ ଠିକ୍ ଜାଗାରେ ପହଞ୍ଚିଲେ। ଉପର ବାରନ୍ଦାରେ ଥାଆନ୍ତି ରୁଦାବେ। ତଳେ ଥାଆନ୍ତି ଜାଲ୍। ଦିହେଁ ଦିହିଁଙ୍କ ମଙ୍ଗଳ ମନାସିଲେ। ଦିହେଁ ଦିହିଁଙ୍କି

ଆଖିପୂରାଇ ଦେଖିଲେ। ଏ ଭିତରେ ସଞ୍ଜ ହେଇଗଲା। ଜାଲ୍ କହିଲେ, "ମୁଁ ତମପାଖକୁ ଯାଆନ୍ତି!"

ରୁଦାବେ ·ଖୋଲିଦେଲେ ତାଙ୍କ ବେଣୀକି। ଆଉ ସେ ବେଣୀ ଲମ୍ବିଗଲା ତଳକୁ। ଜାଲ୍ ସେଇ ବେଣୀକି ଧରି ଉଠିଆସିଲେ। ଜାଲ୍ କହିଲେ, "ରାଜକୁମାରୀ, ତମେଇ କେବଳ ମୋ'ର ସ୍ତ୍ରୀ ହେବ। ଆଉ କେହି ସେ ଅଧିକାର ପାଇବେନି। ତେବେ ତମେ ତ ସବୁକଥା ଜାଣ। ମୁଁ ଗୁରୁଜନମାନଙ୍କୁ ପଚାରିବି। ସେମାନେ ଅନୁମତି ଦେଲେ, ତମକୁ ଘେନିଯିବି।"

ରୁଦାବେ କହିଲେ, "ଯାହା ହେବାର ହେଉ। ତମେଇ ମୋ'ର ସବୁ। ମୁଁ ଆଉ ଆପଣାର ହେଇ ରହିନି। ମୁଁ ତମର। ତମେ ଯାହା ଚାହିଁବ, ତାହାଇ ହେବ। ତମେ ମୋ'ର ଜୀବନ-ମରଣର ସାଥୀ।"

ତା'ପରେ ଜାଲ୍ ଫେରିଗଲେ। ତା'ପର ଦିନ ଜାବୁଲିସ୍ଥାନର ମୁଖିଆମାନଙ୍କୁ ସେ ଡାକିଲେ। କହିଲେ, "ଆପଣମାନେ ସମସ୍ତେ ଗୁଣୀଲୋକ, ଜ୍ଞାନୀଲୋକ। ମୋତେ ଅନୁମତି ଦିଅନ୍ତୁ— ମୁଁ ରାଜଜେମା ରୁଦାବେଙ୍କୁ ଗ୍ରହଣ କରେ।"

ମୁଖିଆମାନେ ସମସ୍ତେ ଚମକିଗଲେ। କ'ଣ କହୁଛନ୍ତି ଜାଲ୍! ସମ୍ରାଟ୍ ଶୁଣିଲେ ଭଲହେବନି। ତା'ଛଡ଼ା ଜାହୋନ୍ ଆଖପାଖରେ ନାହାନ୍ତି। ଇଏ ତ ଗୋଟାଏ ଜଟିଳ ସମସ୍ୟା— ସହଜ କଥା ନୁହେଁ ଯେ ସେମାନେ ହଁ କରିଦେବେ। ଠିକ୍ ହେଲା, ଜାହୋନ୍ଙ୍କ ପାଖକୁ ସମ୍ବାଦ ପଠାଯିବ। ଜାହୋନ୍ ଯାହା କହିବେ; ସେଇ ଅନୁସାରେ କାମ ହେବ।

ଦୁଇ-ତିନି ମାସ ପରେ ଦୂତ ଜାହୋନ୍ଙ୍କ ପାଖରେ ପହଞ୍ଚିଲା। ସେ ଦେଲା ମୁଖିଆମାନଙ୍କ ଚିଟାଉ। ବୁଢ଼ା ଜାହୋନ୍ ଏ କଥା ଶୁଣି ପଥର ହେଇଗଲେ। ଏମିତି ଗୋଟାଏ ମନ୍ଦକଥା ଜାଲ୍ ମୁଣ୍ଡକୁ ଢୁକିଲା କୋଉଠି! ଇଏ ତ ପାରସ୍ୟର ଇତିହାସରେ ନଥିଲା। ମିନୁଚିର୍ କ'ଣ କହିବେ! କ'ଣ ଭାବିବେ! ଏମିତି ଚିନ୍ତାଭିତରେ ସେ ତାଙ୍କର ଗଣକ, ଯାଦୁକରମାନଙ୍କୁ ଡକାଇଲେ। ସେମାନେ ନାନା ଗଣନା

ଭିତରେ କହିଲେ –

"ଭାଳିବାର କିଛି ନାହିଁ ମହାରାଜ,
ଚିନ୍ତିବାର କିଛି ନାହିଁ,
ଦଇବ ଘଟନା ଯାହାକୁ ରଖିଚି
ଯାହାର ନିମନ୍ତେ ନେଇ।"

"ଦେବତାମାନେ ଏ ବିବାହ ପସନ୍ଦ କରୁଛନ୍ତି। ସମ୍ରାଟ୍ ମିନୁଟିର୍ ପହିଲେ ଟିକେ ଇତସ୍ତତଃ ହୋଇପାରନ୍ତି। ଆମକୁ ଟିକେ ଛଗିବାକୁ ହେବ। ଆପଣ ବେଳକାଳ ଦେଖି କଥାଟା ପକେଇବେ। ପରେ ସେ ଯେମିତି ସବୁକଥା ଜାଣିବେ, ଖୁସିହେବେ। ବିବାହ ହେବଇ ହେବ– ଏଥିରେ ବାଧା କିଛି ନାହିଁ। ଏ ବିବାହ ବରଂ ଖୁବ୍ କଲ୍ୟାଣ ଆଣିବ। ଏଇ ଝିଅ ହେବ ଏପରି ଜଣେ ବୀରର ମା', ଯାହାକୁ ନେଇ ସାରା ପାରସ୍ୟ ଗର୍ବକରିବ।"

ଜାହୋନ୍‌ଙ୍କ ମନରୁ ସବୁ ସନ୍ଦେହର କୁହୁଡ଼ି ଉଭେଇଗଲା। ସେ ନିଶ୍ଚିନ୍ତ ହେଲେ। ପୁଅର ଏ କାମରେ ଦେବତାମାନଙ୍କ ଆଶୀର୍ବାଦ ଅଛି ଜାଣି ସେ ଆନନ୍ଦରେ ଉଲ୍ଲସିଉଠିଲେ। ମନେମନେ ସମ୍ରାଟ୍‌ଙ୍କୁ କ'ଣ କ'ଣ କହିବେ, ଠିକ୍ କରିଗଲେ। ସେ ଦୂତ ହାତରେ ଖବର ପଠାଇଲେ, "କହିବ ପୁଅକୁ, ଏ କଥାରେ ମୁଁ ରାଜି। ବର୍ତ୍ତମାନ ପାଇଁ ଏ କଥାକୁ ଗୋପନରଖିବ। ସମ୍ରାଟ୍ ଜାଣିଲେ ଅଡୁଆ ହେବ। ପହିଲେ, ତାଙ୍କର ଅନୁମତି ଆଣିବା। ତା'ପରେ ବିବାହ। ନିଜେ ଜାହୋନ୍ ଏକଥା ସମ୍ରାଟ୍‌ଙ୍କ ଆଗରେ ପକାଇବେ।"

ଜାଲ୍ ଆଉ ରୁଦାବେ ଛଗିରଖି ଚଳୁଥିଲେ। ଏ ଭିତରେ ସେମାନେ ଥରେ ବି ସାକ୍ଷାତ୍ କରିନଥିଲେ; ମାତ୍ର ଚାକର ହାତରେ ସେମାନଙ୍କର ଖବର ଦିଆନିଆ ଚାଲିଥାଏ।

ଲୋକେ କହନ୍ତି, ପବନର ବି କାନ ଅଛି; ଆକାଶର ବି ଆଖି ଅଛି। ଏମାନେ ଯେତେ ଲୁଚେଇ ଲୁଚେଇ ଚଳିଲେ ବି କଥାଟି ଫୁଟିଆରା ହୋଇଗଲା। ପବନରେ ଭାସି ଭାସି ଗଲା ଅନେକ କଥା। ରାଣୀ ଏ କଥା ଜାଣିଲେ। ସିଏ ଯାଇ ଝେମାଙ୍କ ପାଖରେ ପହଞ୍ଚିଗଲେ। ପଚାରିଲେ, "କ'ଣ ହେଇଚି ଝେମା! ମୁଁ ଶୁଣିଚି..."

—"କ'ଣ ଶୁଣିଚ ମାଆ ?"

—"ତୋ' ସହତ ଚାଲ୍ . . ."

—"ସତକଥା . . . ମା !"

—"ଏ କଥା କହିପାରୁଚୁ ?"

—"ଖାଲି ସେତିକି ନୁହେଁ ମା' . . . ଏ ଦୁନିଆଁରେ ସେ ମୋ'ର ସବୁ। ତାଙ୍କ ଛଡ଼ା ମୋ'ର ଆଉ କୌଣସି ଇଚ୍ଛା ନାହିଁ।"

ରାଣୀ ଝିଅର କଥାରେ ପହିଲେ ଖୁବ୍ ଘାବରେଇଗଲେ; ମାତ୍ର ପରେ ଯେତେବେଳେ ଜାଣିଲେ, ଯେ ଜାହୋନ୍ ବି ଏ କଥା ଜାଣନ୍ତି ଆଉ ସିଏ ଏ ସମ୍ବନ୍ଧକୁ ସମର୍ଥନ କରନ୍ତି, ସେତେବେଳେ ତାଙ୍କର ମନରେ ନୂଆ ଆଶା ଜାଗିଲା। ଝିଅ ଯେ ଠିକ୍ ଲୋକକୁ ବାଛିଚି, ଏଥିରେ ତାଙ୍କର ସଂଦେହ ନ ଥାଏ।

ରୁଦାବେ ଖୁସିହେଲେ— ମା' ତାଙ୍କ କାମକୁ ପସନ୍ଦ କରିଛନ୍ତି। ଏ ଖୁସି ବେଶୀ ବେଳ ରହିଲାନି। ଖୁବ୍ ଶୀଘ୍ର ତାଙ୍କ ବାବା ଏ କଥା ଜାଣିଲେ। ସେ ରାଗି ପାଚିଗଲେ। କ'ଣ କଲା ଏ ଝିଅ ! ପାରସ୍ୟ ସମ୍ରାଟ୍ ଆଉ କିଛି ରଖିବେ ? ଯିବ ତାଙ୍କର ରାଜ୍ୟ; ସିଏ ହେବେ ଦାଣ୍ଡର ଭିକାରି। କଥାଟା ହୁଏତ ସେତିକିରେ ରହିନପାରେ। ହୁଏତ ତାଙ୍କର ମୁଣ୍ଡ ଛିଡ଼ିଯାଇପାରେ ! କ'ଣ କଲା ଏ ହତଭାଗୀ ଝିଅଟା ! ସେ ପାଟିତୁଣ୍ଡ କରି ଜମାଇଲେ।

ରାଣୀ ତାଙ୍କୁ ଶାନ୍ତକଲେ। ବହୁ କଥା ବୁଝାଇଲେ। କହିଲେ, "ଦେଖ, ଝିଅ ଆଉ ଛୁଆ ହେଇ ରହିନି। ତା' ଛଡ଼ା ସିଏ ସବୁଠୁ ଯୋଗ୍ୟ ଲୋକକୁ ବାଛିଚି। ସେଥିରେ ତମର ଦୁଃଖ କରିବାର କୌଣସି କାରଣ ନାହିଁ। ଯଦି କିଛି କ୍ଷତି ହୁଏ, ଝିଅର ସୁଖ ପାଇଁ ସହିବାକୁହେବ। ଆଉ ଦେଖ, ମୁଁ ଝିଅକୁ ଡକାଇପଠାଇଚି। ସିଏ ଆସିଲେ, ତମେ ତା' ଉପରେ ଯେମିତି ନ ରାଗ !" ଏଇପରି ଅନେକ ବୁଝାବୁଝି କରି ରାଣୀ ରାଜାଙ୍କୁ ଶାନ୍ତ କରାଇଦେଲେ।

ରୁଦାବେ ଆସି ପହଞ୍ଚିଲେ। ହସି ହସି ସେ ବାବାଙ୍କର ପାଦଛୁଇଁଲେ। ଝିଅକୁ ଦେଖି ରାଜାଙ୍କର ରାଗ ପାଣି ଫାଟିଗଲା।

ଜାହୋନ୍ ଯୁଦ୍ଧରେ ଜିଣିଲେ। ସେ ସିଧାସଳଖ ଯାଇ ସମ୍ରାଟ୍

ମିନୁଚିର୍‌ଙ୍କୁ ଭେଟିଲେ– ଜାଲ୍‌ ଆଉ ରୁଦାବେଙ୍କ କଥା କହିଲେ। ସମ୍ରାଟ୍‌ ରାଗରେ ଗର୍ଜି ଉଠିଲେ– "କ'ଣ କହୁଚ ଜାହୋନ୍‌! ପବିତ୍ର ପାରସ୍ୟ ଦେଶରେ ଏ କଥା ଘଟିପାରେନି। ତମେ କ'ଣ ଚାହଁ ସେଇ ସର୍ପସମ୍ରାଟ୍‌ର ବଂଶଧରମାନେ ଏ ଦେଶର ମାଲିକ ହେବେ? ନା ନା,– ତା' ହେଇପାରେନି। ମୁଁ ପାରସ୍ୟର ସମ୍ରାଟ୍‌। ତମକୁ ମୁଁ ଆଦେଶ ଦେଉଚି– ତମେ ମୋ'ର ସମସ୍ତ ସେନାବାହିନୀ ନିଅ। କାବୁଲ୍‌ ଆକ୍ରମଣ କର। ସେ ରାଜାକୁ, ତା'ର ଜ୍ଞାତିକୁଟୁମ୍ବ ସମସ୍ତଙ୍କୁ ମାରି ରାସ୍ତାରେ ଗଡ଼ାଇଦିଅ। ସେ ଦୁଷ୍ଟ ଏମିତି ଶିକ୍ଷାପାଇବ, ଯା' ଫଳରେ ଭବିଷ୍ୟତରେ ଆଉ କେହି ସେ ପ୍ରକାର ସାହସ କରିବନି। ଖାଲି ସେତିକି ନୁହେଁ, କାବୁଲ୍‌କୁ ମାଟିରେ ମିଶାଇଦିଅ। କାବୁଲ୍‌ର ପ୍ରତିଟି ମଣିଷକୁ ମାରି ଶୁଆଇଦିଅ। କାବୁଲ୍‌ କି ତା'ର ବାସିନ୍ଦା କେହି ବଞ୍ଚିରହିବେନି।"

ଏ କଥା ମିହିରାବ୍‌ଙ୍କ କାନରେ ପଡ଼ିଲା। ସିଏ ଆଗରୁ ଟିକେ ଚୁପ୍‌ ହେଇ ଯାଇଥିଲେ। ଝିଅର ମୁହଁକୁ ଆଉ ରାଣୀଙ୍କ କଥା ଶୁଣି ସିଏ ଶାନ୍ତ ହେଇଥିଲେ। ମିନୁଚିର୍‌ଙ୍କ ଆଦେଶରେ ତାଙ୍କର ସବୁ ଶାନ୍ତି କୁଆଡ଼େ ଦୂର ହେଇଗଲା। ସେ କହିଲେ, "କେତେ ବା ସୈନ୍ୟ-ସାମନ୍ତ ମୋ'ର! ପାରସ୍ୟ ସମ୍ରାଟ୍‌ ଆଗରେ ମୁଁ ତ ଛାର! ହାତୀ ଆଗରେ ଗୋଟି ମୂଷା! ମୁଁ କ'ଣ ପାରସ୍ୟ ସମ୍ରାଟ୍‌ଙ୍କ ରାଗର ମୁକାବିଲା କରିପାରିବି? ସେ କ୍ଷେତ୍ରରେ, ରୁଦାବେକୁ ମାରିଦେଲେ ସବୁ ଶେଷ ହୋଇଯିବ। ତାହାରି ଯୋଗୁଁ ସିନା ଏତେ ଗୋଳମାଳ! ସିଏ ନଥିଲେ ଆଉ କୋଉ ଗୋଳମାଳ ହେବ?"

ରାଣୀ ବୁଝାଇଲେ– "ରାଜା ହେଇ ଅବୁଝା ହୁଅନ୍ତୁନି। ବାପ ହେଇ ଝିଅକୁ ମାରିବ? ଏ କଥା ବଡ଼ ଅସୁନ୍ଦର! ଜାହୋନ୍‌ ଆସିବା ସଙ୍ଗେ ସଙ୍ଗେ ଆମେ ଶରଣ ପଶିବା। ଆମେ ତାଙ୍କୁ ଧନ, ରତ୍ନ, ଘୋଡ଼ା ଭେଟିଦେବା! ତେଣିକି ଯାହା ଥିବ କପାଳରେ! ଆମେ ଯେମିତିହେଲେ ମରିବା; ହେଲେ ଝିଅଟାକୁ ମାରିବା କିଆଁ?"

ମିହିରାବ୍‌ ଶାନ୍ତହେଲେ। ସେ ଅନେକ ଭେଟି ପଠାଇଲେ। ଜାହୋନ୍‌ ସୈନ୍ୟ ନେଇ କାବୁଲ୍‌ ଆସିଥିଲେ ସିନା, ଲଢ଼େଇ ନ କରି ଅପେକ୍ଷା

କଲେ। ତାଙ୍କ ପୁଅର ଆନନ୍ଦର କିଛି ଗୋଟାଏ ମୂଲ୍ୟ ଅଛି ତ! ସିଏ ବି ବୁଦ୍ଧି-ବିଚାରି କାମ କରିବା ଉଚିତ। ହେଲେ, ମିନୁଟିରିଙ୍କ ରାଗକୁ ମୁକାବିଲା କରିବେ କେମିତି!

ଶେଷକୁ ଜାଲ୍ ନିଜେ ଗଲେ। ସମ୍ରାଟ୍‌ଙ୍କୁ ଅଳିକଲେ। ଆଉ କହିଲେ, 'ମହାମହିମ ସମ୍ରାଟ୍, ଆପଣଙ୍କର ଟିକେହେଲେ ଏଥିରେ କ୍ଷତିହେବନି। ଆପଣ ଗଣକମାନଙ୍କୁ ପଚାରନ୍ତୁ। ସେମାନେ କ'ଣ କହୁଚ଼ନ୍ତି, ଶୁଣନ୍ତୁ। ସେମାନେ ଯଦି ବିପରୀତ କଥା କହିବେ, ମୁଁ ନିଜେ ତା'ର ସମାଧାନ କରିଦେବି।''

ସମ୍ରାଟ୍ ସେଇ ଅନୁସାରେ ଗଣକମାନଙ୍କୁ ଡକାଇଲେ। ସେମାନେ ସମସ୍ତେ ଏ ବିବାହଲାଗି କହିଲେ। ଏହାଛଡ଼ା ଏ ବିବାହ ପାରସ୍ୟର ହିତ କରିବ ବୋଲି ଜଣାଇଲେ। ସମ୍ରାଟ୍ ରାଗ ଭୁଲିଲେ। ବିବାହକୁ ସେ ଆଶୀର୍ବାଦ ଜଣାଇଲେ। ଧୁମ୍‌ଧାମ୍‌ରେ ଜାଲ୍ ଆଉ ରୁଦାବେଙ୍କ ଭିତରେ ବିବାହ ହେଲା। ଯେତେ ଯେତେ ସନ୍ଦେହ, ଭୟ ଥିଲା, ସବୁ ଶେଷ ହେଲା। ଚାରିଆଡ଼େ ଆନନ୍ଦର ଲହରୀ ଖେଳିଗଲା। ଖୁବ୍ ଖୁସିରେ ଜାଲ୍ ଆଉ ରୁଦାବେ ରହିଲେ।

ଅଳ୍ପଦିନପରେ ରୁଦାବେଙ୍କ ଦିହ ଖରାପ ହେଲା। ପାରସ୍ୟର ଯେତେ ଯେତେ ଡାକ୍ତର ଥିଲେ, ସମସ୍ତେ ଲାଗିଲେ। ଅନେକ ଔଷଧ ଦିଆଗଲା। କିଛି ଫଳ ହେଲାନି। ରୁଦାବେଙ୍କ ଦିହ ଭାଙ୍ଗିପଡ଼ିଲା। ତାଙ୍କର ସୁନ୍ଦର ଦିହଟି ଶୁଖି କାଠି ହେଇଗଲା। ଜାଲ୍‌ଙ୍କ ମନରେ ଦୁଃଖର ପାହାଡ଼ ଅଜାଡ଼ି ହେଇପଡ଼ିଲା। ଜାବୁଲିସ୍ଥାନର ପରଜା-ପାଟକ ସମସ୍ତଙ୍କ ମନରେ ଦୁଃଖ। ଜାଲ୍‌ଙ୍କୁ ଆଉ ନୂଆ ଯୁବରାଣୀଙ୍କୁ ସମସ୍ତେ ବୁକୁଭରି ଭଲ ପାଉଥିଲେ! ରୁଦାବେ ଖାଲି ମରଣକୁ ଚାହିଁରହିଲେ। ସାରାଦେଶରେ ଦୁଃଖ ଆଉ କାନ୍ଦ!

ବୀର ଯୁବକ ଜାଲ୍ ଆଉ ସଂଭାଳି ପାରିଲେନି। ସ୍ତ୍ରୀଙ୍କ ଶେଯପାଖରେ ଦିନେ ବସିଥିଲେ। ଏଇ ଝିଅଟିକି ପାଇବାକୁ ଦେଶରେ କ'ଣ ନ ଘଟିଚି! ଅଥଚ୍ ସିଏ ଆଜି ସମସ୍ତଙ୍କୁ ଠକିଦେଇ ସେ ପୁରକୁ ଚାଲିଯିବାକୁ ବସିଚି। ଏଇ ଚିନ୍ତାରେ ତାଙ୍କ ବୁକୁ ଥରିଉଠିଲା। ସେ କାନ୍ଦିଉଠିଲେ। ଗୋଟାଏ ଛୋଟ ପିଲାପରି ସେ ରୁଦାବେଙ୍କୁ ଧରି କାନ୍ଦିବାକୁ ଲାଗିଲେ।

ସେ ଚିରିପକାଇଲେ ତାଙ୍କର ପୋଷାକ। କ'ଣ ଏ ପୋଷାକ ହେବ ଆଉ! କ'ଣ ହେବ ଏ ଘରଦୁଆର! ଏ ଧନ ଦରବ! ସେ ଏ ସବୁକୁ ନଷ୍ଟ କରିଦେବେ! ମନେପଡ଼ିଲା ପିଲାଦିନର କଥା। ବାବା ତାଙ୍କୁ ଛାଡ଼ି ଦେଇଥିଲେ ଏଲ୍‌ବର୍ଜର ଜଙ୍ଗଲରେ। ସେ ଜଙ୍ଗଲରେ ତ ଅନେକ ହିଂସ୍ର ଜୀବଜନ୍ତୁ ଥିଲେ! ସେମାନେ ଜାଲ୍‌ଙ୍କୁ ମାରିଦେଲେନି କିଆଁ ? କାହିଁକି ସିମୁର୍ଗ ତାଙ୍କୁ ରକ୍ଷାକଲା ? କାହିଁକି ପାଳିଲା ! ସେତେବେଳେ ମରିଯାଇଥିଲେ, ଏତେ ଦୁଃଖ ସହିବାକୁ ହେଇନଥାନ୍ତା।

ସିମୁର୍ଗର କଥା ମନକୁ ଛୁଇଁଲାକ୍ଷଣି, ଜାଲ୍ ଆହୁରି ଅନେକ କଥା ଭାବିଚାଲିଲେ। ଏଇ ସମୟରେ ସିମୁର୍ଗର ବିଦାୟ ବେଳାର ଉପହାର କଥା ବି ମନେପଡ଼ିଲା। ସେ ଡେଇଁ ପଡ଼ିଲେ। ସେ ପାଗଳପରି ନାଚିଗଲେ – 'ରୁଦାବେ ମରିପାରେନି; ମୁଁ ତାଙ୍କୁ ଅଲବତ୍ ବଞ୍ଚାଇବି।' – କହୁଁ କହୁଁ ସେ ସିମୁର୍ଗର ପରଟିକୁ ନିଆଁରେ ପକାଇଦେଲେ।

ଜାଲ୍ କହିଲେ, ''ରୁଦାବେ, ଡରିବନି। ବର୍ତ୍ତମାନ ଗୋଟାଏ ବିଚିତ୍ର କଥା ଘଟିବାକୁ ଯାଉଛି। ହେଲେ, ଏଥିରେ ଆମର ଉପକାରଇ ହେବ।''

କଥାସରିନି, ଆକାଶଟା ଅନ୍ଧାର ହେଇଗଲା। ସେଇ ଅନ୍ଧାର ଭିତରେ ଓହ୍ଲାଇ ଆସିଲା ଏକ ବିରାଟ ପକ୍ଷୀ। ସେ ସିମୁର୍ଗ। ସିମୁର୍ଗ ଆସି କହିଲା, ''କ'ଣ ହେଲା ବାବା! ବହୁତ କଷ୍ଟ ପାଇଲ!''

ତା'ପରେ ସିମୁର୍ଗର ଦୟାରୁ ରୁଦାବେ ଭଲ ହେଇଗଲେ। ସିମୁର୍ଗ ଆଉ କେତୋଟି ପର ଦେଇଗଲା। କହିଲା, ''ପ୍ରୟୋଜନ ହେଲେ ମତେ ଡାକିବ ବାବା! ଆଉ ଖୁବ୍ ଶୀଘ୍ର ସେଇ ଜଗତବିଖ୍ୟାତ ପୁଅଟି ତମର ଆସୁଚି।''

ସତକୁ ସତ ରୁଦାବେଙ୍କର ଗୋଟିଏ ଚମତ୍କାର ପୁଅ ହେଲା। ଜନ୍ମବେଳକୁ ସେ ଗୋଟାଏ ବରଷିକିଆ ପିଲାପରି ହୋଇ ଜନ୍ମନେଇଥିଲା। ଆଠବର୍ଷ ବେଳକୁ ସେ ପାରସ୍ୟର ଜଣେ ବଡ଼ ବୀର ହୋଇସାରିଥାଏ।

ସେ ପିଲାର ନାଁ ହେଲା ରୁସ୍ତମ୍। ସେ ଥିଲା ପାରସ୍ୟର ଗର୍ବ; ପାରସ୍ୟର କବଚ। ପାରସ୍ୟ ଲୋକେ କହୁଥିଲେ, ସିଏ ମଣିଷ ନୁହଁ ଯେ – ସିଏ ଜଣେ ଦେବତା!

# ବାଳକବୀର ରୁସ୍ତମ୍

ସମ୍ରାଟ୍ ମିନୁଚିର୍‌ଙ୍କ ଥାଏ ହାତୀଟାଏ। ହାତୀ ତ ସହଜେ ବଡ଼— ମାତ୍ର ଏ ହାତୀଟା ସାଧାରଣ ହାତୀଠୁ ଅନେକ ବଡ଼। ଧଳା ରୂପ। ଏଡ଼େ ଏଡ଼େ ଦାନ୍ତ ଗୋଟାଏ ଧଳା ପାହାଡ଼ପରି ଦିଶୁଥେ। ହାତୀଟା ଥିଲା ଜାହୋନ୍‌ଙ୍କ ଦାୟିତ୍ୱରେ। ଜାହୋନ୍‌ଙ୍କ ଛଡ଼ା ତାହାକୁ କେହି ଆୟତ୍ତ କରିପାରୁନଥିଲେ। ଜାହୋନ୍ ତ ଖୁବ୍ ବୀର ଥିଲେ; ଲଢ଼େଇକି ଗଲେ ଏଇ ହାତୀରେ ଯାଉଥିଲେ। ଅନ୍ୟବେଳରେ ଗୋଟାଏ ମୋଟା ଶକ୍ତ ଲୁହା ଶିକୁଳିରେ ସେ ହାତୀ ବନ୍ଧା ହୋଇଥେ।

ସେ ବେଳକୁ ଜାହୋନ୍ ବୁଢ଼ା ହୋଇଗଲେଣି . . .

ହଠାତ୍ ଦିନେ ହାତୀ ଏ ଶିକୁଳିଟାକୁ ଛିଣ୍ଡାଇପକାଇଲା। ତା'ପରେ ସେ ଦୌଡ଼ିଲା ଏଣେତେଣେ। ସହରଟା ସାରା ବୁଲିଲା। ଯାହାକୁ ଆଗରେ ପାଇଲା ପାଦରେ ଚକଟି ଦେଲା। ଶୁଣ୍ଢରେ ଧରି ଉପରକୁ ଫିଙ୍ଗିଲା। ଘରଗୁଡ଼ାକ ଭାଙ୍ଗିଲା। ଚାରିଆଡ଼େ 'ହାତୀ ହାତୀ' ବୋଲି ଲୋକେ ବିକଳରେ ପାଟିକଲେ। କାହାରି ସାହସ ନ ଥାଏ ତା' ସାମ୍ନାକୁ ଆସିବାକୁ। ମହା ମହା ବୀରମାନେ ପିଠି ଦେଖାଇ ପଳାଇଲେ।

ସେତେବେଳେ ଶୁଭ୍ରଶିର ଜାଲ୍‌ଙ୍କ ସେଇ ପୁଅ ରୁସ୍ତମ୍ ସାମାନ୍ୟ ବାଳକଟିଏ। ସେ ଦୁର୍ଗ ଭିତରେ ଶୋଇଥାଏ। ବାହାରେ ଲୋକଙ୍କ ପାଟିଗୋଳ, ଚିତ୍କାର ପିଲାଟିର ନିଦ ଦେଲା ଭାଙ୍ଗି। ସିଏ ଧଡ଼ପଡ଼ ହେଇ ଉଠିଲା। କ'ଣ ଗୋଟେ ବିପଦ ପଡ଼ିଚି ଭାବି ତା'ର ସେଇ ବଡ଼ ଲୁହା ଗଦାଟାକୁ ଧରିଲା। ସେ ଦଉଡ଼ିଲା ସେଇଆଡ଼କୁ, ଯୋଉ ଦିଗରୁ ଲୋକଙ୍କ ପାଟିତୁଣ୍ଡ ଶୁଭୁଥେ। ଯାଇ ସେ ପହଞ୍ଚିଲା ସେଇ ଜାଗାରେ। ପାଇକମାନେ ସେଠି ଥାଆନ୍ତି। ସେମାନେ ଏ ଧଳାହାତୀର କଥା କହିଲେ। ବାଳକ କହିଲା, ''ପାଇକମାନେ, ମୋତେ ଦିଅ ଛାଡ଼ି। ମୁଁ ସେ ହାତୀକି ଜବତ କରିଦେବି।''

ପାଇକମାନେ ପିଲାଟିକି ବାରଣ କଲେ— ''ଇଏ ପିଲାଖେଳ

ନୁହଁ ହୋ ବାବୁ ! ତା'ଛଡ଼ା ତୁମେ ସେଠିକି ଯିବ; କିଛି ଗୋଟେ ଅଘଟଣ ଘଟିବ। ତମ ବାବା ଆମକୁ କ'ଣ କହିବେ ! ଆମେ ଜାଣୁ ଜାଣୁ ତମକୁ ଯମମୁହଁକୁ ଠେଲି ଦେଇ ପାରିବୁନି !'' କିଛି ଶୁଣିଲାନି ସେ ପିଲା। ସେ ଏମିତି ପାହାରେ ଦେଲା ଯେ, ସେ ଲୁହାର ଫାଟକ ଝଣଝାଣ କରି ଭାଙ୍ଗିଗଲା। ରୁସ୍ତମ୍ ବୀରଦର୍ପରେ ସେ ଭିତରକୁ ପଶିଗଲା।

ହାତୀଟା ପ୍ରାୟ ପାଗଳ ହେଇଯାଇଥାଏ। ଲୋକ ଉପରେ ଲୋକକୁ ପାଦତଳେ ମକଚିପକାଉଥାଏ। ହାତୀ ଏ ଛୁଆଟିକି ଦେଖିଲା ତ, ପେଁ-ପେଁ ଗର୍ଜିଲା। ଶୁଣ୍ଢଟାକୁ ଉପରକୁ ଟେକି ଦଉଡ଼ିଲା ରୁସ୍ତମ୍ ଆଡ଼କୁ। ରୁସ୍ତମ୍ ଅପେକ୍ଷା କରୁଥାଏ। ହାତୀ ଖୁବ୍ ପାଖକୁ ଆସିଗଲାଣି। ଗଦା ଉଞ୍ଚାଇ ସିଏ ଖାଲି ଠିଆ ହୋଇ ରହିଥାଏ। ହାତୀ ଏଇ ପିଲାଟିକି ଆକ୍ରମଣ କରିବ— ଏଇ ମୁହୂର୍ତ୍ତରେ ରୁସ୍ତମ୍ ଗଦାରେ ଗୋଟାଏ ବଜ୍ରପ୍ରହାର ଦେଲା। ହାତୀଟା ଟଳଟଳ ହେଲା। ତା'ପରେ ଡୋ' କରି ଓଲଟିପଡ଼ିଲା। ଛଟପଟ ହେଲା। ମରିଗଲା। ସମସ୍ତେ ତାଜୁବ୍ ହେଇ ଦେଖୁଛନ୍ତି . . . ଗୋଟାଏ ଛୋଟ ଧଳାପାହାଡ଼ ପଡ଼ିଯାଇଚି। ବାଳକଟିର ଏ ସାହସ . . . ଏ ବୀରତ୍ୱ ସମସ୍ତଙ୍କୁ ପଥର କରିଦେଲା। ଲୋକେ ବିପଦରେ ଡରି କାବୁ ହେଇଯାଇଥିଲେ। ଏ ଘଟଣାରେ ନିଦରୁ ଉଠିଲା ପରି ପାଟିକରି ଉଠିଲେ— 'ବାଳକ-ରୁସ୍ତମ୍ . . . ଜିନ୍ଦାବାଦ୍ ଜିନ୍ଦାବାଦ୍ !!'

ବାବା ଜାଲ୍‌ଙ୍କର ହୃଦୟ ଏ ଘଟଣାରେ ଆନନ୍ଦରେ ଭରିଗଲା। ସେ ଜାଣିଲେ ରୁସ୍ତମ୍ ତା' ଜେଜେ ଜାହୋନ୍ ଆଉ ତାଙ୍କ ନିଜର ନାଁ ନିଶ୍ଚେ ରଖିବ। ରଖିବ ନୁହେଁ ଯେ . . . ସେମାନଙ୍କଠୁଁ ଅନେକ ବଳିଯିବ। ଏମିତି ଗୋଟାଏ ଅଜବ୍ ପିଲାକୁ ଘରର ଚଉହଦି ଭିତରେ ରଖିହେବନି। ମା'ର କୋଳରେ ତାକୁ ଆଉ ବାନ୍ଧି ହେବନି। ସେ ଏଥର ବାହାରକୁ ଯିବ। ଏଥର ସେ ସୈନ୍ୟମାନଙ୍କ ସହିତ ମିଶିବ। ସିଏ ଏଥର ଲଢ଼େଇକି ଯିବ।

ଜାଲ୍ ଏ କଥା ଭାବିଲେ ତ, ତାଙ୍କ ଆଖିରେ ଗୋଟେ କଥା ନାଚିଗଲା। ପାରସ୍ୟର ଗୋଟାଏ ଅଞ୍ଚଳରେ ଥାଏ ଗୋଟାଏ ଦୁର୍ଗ।

ଦୁର୍ଗର ନାଁ ସିପୁଣ୍ଡ୍। ସେ ଦୁର୍ଗର ଚାରିପାଖେ ଥାଏ ବିରାଟ ମରୁଭୂମି। ସେଇ ଦୁର୍ଗରେ ରହୁଥିଲେ ଦଳେ ଲୋକ। ସେମାନେ ଖୁବ୍ ବଳୁଆ। ସେମାନେ ଜାହୋନ୍‌ଙ୍କ ବାବାଙ୍କୁ ମାରିଥିଲେ। ଜାହୋନ୍ କି ଜାଲ୍ ସେମାନଙ୍କୁ ଜବଦ୍ କରି ପାରି ନଥିଲେ। ପୁରୁଷ ପୁରୁଷ ଧରି ଏ ଦୁର୍ଗର ଲୋକମାନଙ୍କ ବିରୁଦ୍ଧରେ ଜାଲ୍‌ଙ୍କ ରାଗ ଥିଲା; ତେଣୁ ସେ ପୁଅକୁ ପଠାଇଥିଲେ, ''ଯାଅ ବାବା, ପିତୃପିତା ଦିନରୁ ଯୋଦ୍ଧମାନେ ଆମର ବଇରୀ, ସେମାନଙ୍କୁ ପରାଜିତ କର। ସେମାନଙ୍କୁ ଜିଣିପାରିଲେ ଆମ କୁଳର ଗୌରବ ରହିବ।''

ବାବାଙ୍କ ପାଖରୁ ଏକଥା ଶୁଣିଲେ ରୁସ୍ତମ୍। ତାଙ୍କର ସାଙ୍ଗସାଥୀମାନଙ୍କୁ ଠୁଳକଲେ। ସେମାନେ ବେପାରୀ ସାଜିଲେ। ସଜାଇଲେ ଓଟଦଳ। ଓଟ ପିଠିରେ ଥାଏ ଲୁଣ। ସିପୁଣ୍ଡ୍‌ରେ ଲୁଣର ବଡ଼ ଅଭାବ; ବିଶେଷରେ ଠିକ୍ ଏ ସମୟରେ ଲୁଣ ଆଦୌ ମିଳୁ ନଥାଏ। ଲୋକେ ଭାବିଲେ, ସେମାନଙ୍କ ଅଭାବ ଜାଣି ଭଗବାନ୍ ଏମାନଙ୍କୁ ପଠାଇଛନ୍ତି। ସେମାନେ ବେପାରୀଙ୍କଠୁଁ ଲୁଣ କିଣିଲେ ଓ ବଦଳରେ ନାନା ଜିନିଷ ଦେଲେ। ରାତିରେ ରହିବାକୁ ଆଶ୍ରୟ ଦେଲେ।

ସଞ୍ଜ ମାଡ଼ିଆସିଲା। ଦିନର ଆଲୁଅ କୋଉ ଦୂରରେ ଲିଭିଗଲା। ଆକାଶରେ ମାଡ଼ିଆସିଲା ରାତିର କଳା। ପାରସ୍ୟର ଏ ଯୋଦ୍ଧାମାନେ ସେମାନଙ୍କ ଛଦ୍ମବେଶ ଫିଙ୍ଗିଦେଲେ। କିଲାର ମାଲିକଙ୍କ ଘର ଉପରେ ଚଢ଼ାଉ ହେଲା ପହିଲେ। ଦୁର୍ଗର ବିପଦ-ଘଣ୍ଟା ବାଜିଉଠିଲା। ଚାରିଆଡ଼େ ଶୁଭିଲା, ''ଶତ୍ରୁ ! ଶତ୍ରୁ ଆସିଚି। ମୁକାବିଲା କର !!''

ସିପୁଣ୍ଡ୍‌ର ଲୋକମାନେ ନାନା ଅସ୍ତ୍ରଶସ୍ତ୍ର ନେଇ ବାହାରିଆସିଲେ। ଭୀଷଣ ଲଢ଼େଇ ହେଲା। କିନ୍ତୁ ଶୁଭ୍ରଶିର ଜାଲ୍‌ଙ୍କର ପୁଅ ରୁସ୍ତମ୍ ଏମିତି ଲଢ଼ିଲେ ଯେ, ସିପୁଣ୍ଡ୍ ହାରିଲା। ଖାଲି ହାରିଲା କହିଲେ ଠିକ୍ ହେବନି; କାରଣ ଲଢ଼େଇ ସରିଲା ବେଳକୁ ଶତ୍ରୁପକ୍ଷର ଗୋଟିଏ ବି ପୁରୁଷ ବଞ୍ଚି ନ ଥାଏ। ସେମାନେ କିଲା ଅଧିକାରୀଙ୍କ ଘରକୁ ପୋଡ଼ିଦେଲେ। ସେଠୁ ପାଇଲେ ଅଜସ୍ର ସୁନା, ହୀରା, ମୁକ୍ତା ଆଦି ରତ୍ନ। ସେମାନେ ସେ ସବୁକୁ ଓଟରେ ବୋଝାଇଲେ। ଜୟନାଦ କରି କରି ସେମାନେ ଫେରିଆସିଲେ ଘରକୁ— ଜାବୁଲିସ୍ଥାନକୁ। ରୁସ୍ତମ୍

ଏମିତି ଭାବରେ ତାଙ୍କ ଭେଇେଙ୍କ ମୃତ୍ୟୁର ପ୍ରତିଶୋଧ ନେଲେ । ଏମିତି ସିପୁଣ୍ଡ୍ ହାରିଲା ଆଉ ମରିଲା — ବାଳକବୀର ରୁସ୍ତମ୍ ହାତରେ ।

ଜାଲ୍ ଓ ରୁଦାବେ ପୁଅର ବିଜୟ ଖବର ପାଇ ଆନନ୍ଦରେ ଅଧୀର ହୋଇଗଲେ । ପୁଅକୁ ଅଧବାଟରୁ ପାଛୋଟି ନେଲେ ସେମାନେ ।

ସମ୍ରାଟ୍ ମିନୁଚିର୍ ବଞ୍ଚିଲେ ଶହେ କୋଡ଼ିଏ ବର୍ଷ । ତାଙ୍କ ପରେ ଦେଶର ଶାସକ ହେଲେ ନାଉଦର । ନାଉଦର ମିନୁଚିର୍ଙ୍କ ପୁଅ । ମୃତ୍ୟୁ ଆଗରୁ ମିନୁଚିର୍ ପୁଅକୁ ବହୁତ କଥା ବୁଝାଇଥିଲେ । ଦେଶର ଶାସନ କଥା, ପ୍ରଜାପାଳନ କଥା, ସୀମାନ୍ତ ଅଞ୍ଚଳ କଥା... ଆଦି ଅନେକ ବିଷୟରେ ସେ ପୁଅକୁ କହିଥିଲେ । ମାତ୍ର ନାଉଦର ସେ କଥା ଅନୁସାରେ ଶାସନ ଚଳାଇପାରିଲେନି । ଲୋକେ ଅସନ୍ତୁଷ୍ଟ ହେଲେ । ରାଜଧାନୀରେ କିଏ କୋଉଠି ରହିବ, ସେ ଲାଗି ଟଣାଓଟରା ଲାଗିଲା । ତେଣୁ ସୀମାନ୍ତ ଅଞ୍ଚଳର ସାମନ୍ତମାନେ ସୁବିଧାନେଲେ ।

ସେ ସମୟରେ ତୁରାନ୍‌ର ଲୋକେ ବି ଖୁବ୍ ଯୋଦ୍ଧା ଥିଲେ । ସେ ଦେଶରେ ଜଣେ ବଡ଼ ବୀର ଥିଲେ । ସେ ହେଉଛନ୍ତି ଆଫ୍ରାସିୟାବ୍ । ଆଫ୍ରାସିୟାବ୍‌ଙ୍କ ବୀରପଣ କଥା ପାଖଆଖରେ ଡିବିଡ଼ିବି ହୋଇ ବାଜୁଥାଏ । ତୁରାନ୍ ରାଜା ଗୋଟାଏ ବଡ଼ ସେନାଦଳ ଗଢ଼ିଲେ । ଆଫ୍ରାସିୟାବ୍ ସେମାନଙ୍କର ନେତା ହେଲେ । ସେମାନେ ପାରସ୍ୟ ଉପରେ ଧାପଦେଲେ ।

ସେ ଦିଗରେ ତୁରାନ୍‌ର ଆକ୍ରମଣ ! ହଠାତ୍ କରି ଜାହୋନ୍‌ଙ୍କୁ ଆଉ ଗୋଟିଏ ଅଜଣା ଯୁଦ୍ଧଭୂଇଁରୁ ଡାକରା ଆସିଲା । ଜାହୋନ୍ ସେଇ ଅଦୃଶ୍ୟ ପଡ଼ିଆରେ ଚୁପ୍‌କରି ମୁଣ୍ଡ ନୁଆଇଁଦେଲେ । କାରଣ ସେ ଦେଶର ସେଇ ଯୋଦ୍ଧା ସହିତ ଲଢ଼ିବାକୁ ପୃଥିବୀରେ ଏ ଯାଏ କୌଣସି ଶସ୍ତ୍ରଧାରୀ ଜନ୍ମ ହୋଇ ନାହାନ୍ତି । ଜାହୋନ୍ ଆଉ ପାରନ୍ତେ କେମିତି ! ପାରସ୍ୟରେ ହତାଶା ଖେଳିଗଲା । ଯୁଦ୍ଧର ଅନୁକୂଳ ବେଳକୁ ଇଏ ଗୋଟେ ଶୁଭ ଚିହ୍ନ ନୁହେଁ । ଜାଲ୍ ହେଲେ ପାରସ୍ୟର ସେନାପତି । ବାବାଙ୍କ ପରେ ପାରସ୍ୟ ଶିବିରରେ ପୁଅ ଜାଲ୍‌ଇ ଥିଲେ ସବୁଠୁ ବଡ଼ ବୀର ।

ତୁରାନ୍ ଶିବିରରେ ବହୁତ ଖୁସି... ସେମାନଙ୍କ ସେନାନାୟକ ରାଜକୁମାର ଆଫ୍ରାସିୟାବ୍ ଜାଲ୍‌ଠୁଁ ବଳୁଆ... କୌଶଳୀ । ତା'ଛଡ଼ା

ବୀର ଜାହୋନ୍ ଓ ବୀର ଜାଲ୍‌ଙ୍କ ଭିତରୁ ବର୍ତ୍ତମାନ ଜଣେ ଗଲେ; ଆଉ ଜଣେ ଅଛନ୍ତି। ତାଙ୍କ ବିରୁଦ୍ଧରେ ଲଢ଼େଇକରିବା ଅନେକ ଗୁଣରେ ଭଲ।

ଆଶା ଆଉ ହତାଶା। ଦି'ଟା ବଳ ଭିତରେ କଷାକଷି ଚାଲିଥିଲାବେଳେ ଅସଲ ଲଢ଼େଇହେଲା। ଆଫ୍ରାସିୟାବ୍ ଆଉ ନାଉଦର୍‌ଙ୍କ ଭିତରେ ଆଫ୍ରାସିୟାବ୍ ଜିତିଲେ। ହାରିଲେ ନାଉଦର୍। ନାଉଦର୍ ବନ୍ଦୀହେଲେ; ଆଉ ହାଣ ଖାଇଲେ। ଆଫ୍ରାସିୟାବ୍ ହେଲେ ପାରସ୍ୟର ସମ୍ରାଟ୍। ପାରସ୍ୟ ସେନା ଭିତରେ ହତାଶା ଖେଳିଗଲା। ସେମାନଙ୍କ ଅଣ୍ଟା ଭାଙ୍ଗିଗଲା।

ଜାଲ୍‌ଙ୍କୁ ଏସବୁ ଭଲ ଲାଗିଲାନି। କିନ୍ତୁ ଦୁର୍ଯୋଗରୁ ତ ସମ୍ରାଟ୍ ହାଣଖାଇଲେ। ସେ ଭାବିଲେ, ଦେଶପାଇଁ ଜଣେ ରାଜା ନିହାତି ଦରକାର। ସିଏ ହେବ ଦଳର ନେତା। ତାଙ୍କର ଇଙ୍ଗିତରେ ଦେଶ ଚଳିବ। ନାଉଦର୍‌ଙ୍କ ଭିତରେ ତା' ନଥିଲା। ତେଣୁ ନିଜ ସୈନ୍ୟ ବି ତାଙ୍କୁ ସହାନୁଭୂତି ଦେଲେନି। ଦେଶର ଏବେ ଜଣେ ନେତା ଦରକାର। ତା' ନହେଲେ, ଲୋକଙ୍କୁ ବୁଝାଇ ହେବନି।

ସେ ସମୟରେ ଏଲବର୍ଜ ପାଖରେ ଜଣେ ରାଜକୁମାର ରହୁଥିଲେ। ତାଙ୍କ ନାଁ କାଇକୋବାଦ। ସେ ଥିଲେ ଫିରୁବିନ୍‌ଙ୍କ ବଂଶର।

କାଇକୋବାଦ୍ ଆଗରୁ ଗୋଟେ ସ୍ୱପ୍ନ ଦେଖିଥିଲେ। ସେଥିରେ ସେ ଦେଖିଥିଲେ, ଦୁଇଟା ଛଞ୍ଚାଣ ସୁନାର ମୁକୁଟଟାଏ ଧରି ଉଡ଼ିଆସିଲେ ଓ ତାଙ୍କରି ମୁଣ୍ଡରେ ଥୋଇଦେଲେ। ତେଣୁ ସେ ଯେ ନିକଟରେ କୋଉ ମୁଲକର ରାଜା ହେବାକୁ ଯାଉଛନ୍ତି, ଏପରି ଗୋଟାଏ ଖିଆଲ ତାଙ୍କର ହୋଇଯାଇଥାଏ।

ଏପରି ଅବସ୍ଥାରେ ପହଞ୍ଚିଲେ ରୁସ୍ତମ୍। ସେ ଜାଲ୍‌ଙ୍କ ଖବର ଜଣାଇଲେ। ରୁସ୍ତମଙ୍କ ସହ କାଇକୋବାଦ୍ ଗଲେ ଜାବୁଲିସ୍ଥାନକୁ। ସେଠି ଜାଲ୍ ତାଙ୍କୁ ଅପେକ୍ଷା କରିଥାନ୍ତି। ସାଥିରେ ତାଙ୍କର ହଜାର ହଜାର ପର୍ସିଆନ୍ ପାଇକ। ଜାଲ୍ କାଇକୋବାଦ୍‌ଙ୍କୁ ସ୍ୱାଗତ ଜଣାଇଲେ। ସେନାଦଳ ଭିତରେ ଗୋଟିଏ ନୂଆ ତାତି ଖେଳିଗଲା। କିଏ କହିଲା, ସେମାନଙ୍କର ରଜା ନାହାନ୍ତି; ନାହାନ୍ତି ସେମାନଙ୍କ ମୁଣ୍ଡ। ଏଇ ତ

ନୂଆ ରଜା । ଏଥର ପାରସ୍ୟ ସେନା ଲଢ଼ିବ; ଜୀବନକୁ ବେପରବାୟ କରି ଲଢ଼ିବ । ଜୀବନ ତାହାର ପଣ !!

କାଇକୋବାଦ୍ ବି ରୁସ୍ତମ୍‌ଙ୍କୁ ଜଣେ ସେନାପତି ପଦରେ ବରଣ କଲେ । ରୁସ୍ତମ୍‌ଙ୍କ ଖୁସିର ସୀମା ରହିଲାନି । ଏତେ ଅଳ୍ପବୟସରେ ସେନାପତି ହେବା ଖୁବ୍ କମ୍ ଲୋକଙ୍କ କପାଳରେ ଘଟେ । ରୁସ୍ତମ୍ ତାଙ୍କ ବାବାଙ୍କୁ କହିଲେ, "ମୋତେ ଗୋଟାଏ ଗଦା ଦିଅ । ଦିଅ ମୋ' ନିଜର ଘୋଡ଼ା ।"

ଜାଲ୍ ସଙ୍ଗେ ସଙ୍ଗେ ଜାହୋନ୍‌ଙ୍କର ଲୁହାଗଦାଟି ଦେଲେ । ଗୋଟାଏ କଥାର ସମାଧାନ ହେଲା । ବାକି ରହିଲା ଘୋଡ଼ା କଥା । ଜାଲ୍ କହିଲେ, "ଘୋଡ଼ାଟି ତମର ପସନ୍ଦ ବାଛି ନିଅ !"

ରୁସ୍ତମ୍ ଗୋଟି ଗୋଟି କରି ଅନେକ ଘୋଡ଼ା ପରୀକ୍ଷା କଲେ । କୌଣସି ଘୋଡ଼ା ସେ ପସନ୍ଦ କଲେନି । ସେ ସବୁ ତାଙ୍କର ଓଜନ ଆଉ ଗଦାର ଭାର ସମ୍ଭାଳିବାରେ ଅକ୍ଷମ ଥିଲେ । ଇଏ ଗୋଟେ ବଡ଼ ପ୍ରଶ୍ନ ହେଇ ତାଙ୍କ ସାମ୍ନାରେ ଠିଆହେଲା । ରୁସ୍ତମ୍ ଦେଶର ଅନେକ ଜାଗାକୁ ଗଲେ । ଉପଯୁକ୍ତ ଘୋଡ଼ା ଖୋଜି ଖୋଜି ଅନେକ ସମୟ କଟାଇଲେ । ହେଲେ, ତାଙ୍କ ପସନ୍ଦର ଘୋଡ଼ାଟିଏ ପାଇଲେନି ।

ଶେଷକୁ ସେ ଗୋଟାଏ ମସ୍ତବଡ଼ ଘୋଡ଼ା ଦେଖିଲେ । ଦେଖିବାକୁ ଯେମିତି ସୁନ୍ଦର . . . ଦିହରେ ତା'ର ବଳ ବି ସେମିତି । ସେ ଘୋଡ଼ାଟିକୁ କାମରେ ଲଗାଇବାକୁ ଅତୀତରେ ଅନେକ ଲୋକ ଚେଷ୍ଟା କରିଥିଲେ । କେହି ପାରିନଥିଲେ । ତାକୁ ଧରିବା ତ କାଠିକର ପାଠ ଥିଲା— ଆଉ କାମରେ ଲଗାଇବେ କ'ଣ !

ରୁସ୍ତମ୍ ଘୋଡ଼ାଟିକି ଦେଖି ଖୁବ୍ ଖୁସିହେଇଗଲେ । ଏଇଟି ହେବ ତାଙ୍କର ଉପଯୁକ୍ତ ବାହନ । ଯୋଉମାନେ ଘୋଡ଼ା ବିଷୟରେ ନାନାକଥା ଜାଣନ୍ତି, ସେମାନେ ଏ ଘୋଡ଼ା ବିଷୟରେ ନିରାଶ ହେଇଯାଇଥିଲେ । ତେଣୁ ରୁସ୍ତମ୍‌ଙ୍କୁ ସେମାନେ ମନାକଲେ । ରୁସ୍ତମ୍ ବାହାରକଥା ଶୁଣିଲେନି । ଗୋଟାଏ ବଡ଼ ଫାଶ କରି ଘୋଡ଼ାର ବେକରେ ଗଳାଇଦେଲେ ସେ । ଘୋଡ଼ାଟା ଚମକିଗଲା । ପାଗଳପରି ଦଉଡ଼ିଲା । ବାଟଘାଟ ମାନିଲାନି । ରୁସ୍ତମ୍‌ଙ୍କୁ ସେ ଟାଣିନେଇଗଲା । ରୁସ୍ତମ୍ ଏଥିରେ ଦବିଗଲେନି ।

ସିଏ ଯେ ଗୋଟାଏ ହାତୀକି ମାରିଦେଇଛନ୍ତି ! ଘୋଡ଼ାଟାକୁ କାବୁକରିବାକୁ ତାଙ୍କୁ ବେଶୀ ଡେରି ଲାଗିଲାନି । ଶେଷରେ ଘୋଡ଼ା ହାରମାନିଲା । ରୁସ୍ତମ୍ ତାକୁ ବାନ୍ଧିପକାଇଲେ । ସେ ଏଥର ରୁସ୍ତମ୍‌ଙ୍କ କଥା ମାନିଲା । ଏଇ ନୂଆ ଘୋଡ଼ାଟିରେ ବସି ସେ ଗଦା ଧରି ବାହାରିଲେ । କାଇକୋବାଦ୍‌ଙ୍କ ସେନାଦଳର ସିଏ ହେଲେ ସେନାପତି । ଏ ଘୋଡ଼ାର ନାଁ ଦିଆଗଲା ରାକୁଶ୍ ।

ଏଥର ଆଫ୍ରାସିୟାବ୍‌ଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା ହେଲା । ସବୁରି ଆଗରେ ବାଳକବୀର ରୁସ୍ତମ୍ । ଖୁବ୍ ଡେଙ୍ଗା ଚେହେରା । ବଡ଼ ଓସାରିଆ ଛାତି । ସୁନ୍ଦର ରଙ୍ଗ । ଧଳା ଉଜ୍ଜ୍ୱଳ ଦାନ୍ତ । କଳା କେଶ କାନ୍ଧଯାଏ ଲମ୍ବିଥାଏ । ଆଖି ଦୁଇଟି ଖୁବ୍ ଉଜ୍ଜ୍ୱଳ । ଯୁଦ୍ଧବେଳେ ଏ ଆଖିରୁ ନିଆଁ ବାହାରେ । ଯୋଉ ସୈନ୍ୟମାନେ ତାଙ୍କର ଲଢ଼ିବା ଦେଖିଛନ୍ତି, ସେମାନେ କହନ୍ତି, ସେ ସମୟରେ ଆଖିଦି'ଟା ଦୁଇଗୁଣ ହୋଇଯାଏ । ଯୁଦ୍ଧଭୂଇଁରେ ଏ ଚେହେରା ଦେଖି ନିଜ ପକ୍ଷର ସୈନ୍ୟମାନେ ଦୁଇଗୁଣ ବଳ ପାଆନ୍ତି । ଶତ୍ରୁର ଛାତିରେ ଚମକ ପଶେ; ସତେ ଯେପରି ମୃତ୍ୟୁର ଦେବତା ଯୁଦ୍ଧଭୂଇଁରେ ସମାଗତ । ଶତ୍ରୁମାନେ ଡରରେ ଛାନିଆ ହୋଇଯାଆନ୍ତି । ସେମାନଙ୍କ ହାତରୁ ଅସ୍ତ୍ର ଖସିପଡ଼େ ।

ରୁସ୍ତମ୍ ଯୁଦ୍ଧରେ ସାଂଜୁ ପିନ୍ଧୁନଥିଲେ । ସେ ଜାଣୁଥିଲେ, ଶତ୍ରୁମାନେ ତାଙ୍କ ଖୋଲା ଦିହଉପରେ ଅସ୍ତ୍ରଶସ୍ତ୍ରରେ ଆଘାତ କରିବେ । ସେଥିକୁ ତାଙ୍କର ଡର ନ ଥିଲା । ମୁଣ୍ଡରେ କେବଳ ଟୋପିଟାଏ । ଆଉ ତା' ଚାରିପାଖେ ବନ୍ଧାଥାଏ ଲମ୍ବା ରୁମାଲ୍‌ଟାଏ । ସେ ଖରାରୁ ରକ୍ଷା-ପାଇବାକୁ ଏ ଦୁଇଟି ପିନ୍ଧୁଥିଲେ ।

ରାକୁଶ୍ ସବୁବେଳେ ଜାକଜମକରେ ସଜାହେଉଥିଲା । ତା'ର ଉପରେ ପଡୁଥିବା ଗଦି ଇତ୍ୟାଦିରେ ସୂକ୍ଷ୍ମ ଚୁମ୍ଫିକାମ ଥିଲା । ତା' ଲଗାମ୍ ଥିଲା ସୁନାର ।

ଏଇପରି ସାଜସଜ୍ଜା ନେଇ ଲଢ଼େଇ ଚାଲିଥାଏ । ସେ ଏକ ଭୀଷଣ ଲଢ଼େଇ । ଜାଲ୍ ପୁଅକୁ ଅନେକ ଉପଦେଶ ଦେଉଥିଲେ । ସେ ଚାହୁଁଥିଲେ ନିଜେ ଆଫ୍ରାସିୟାବ୍‌ର ମୁକାବିଲା କରିବେ । ରୁସ୍ତମ୍ ବାବାଙ୍କର ବାରଣ ମାନିବେ କି ! ସେ ଆଫ୍ରାସିୟାବଙ୍କୁ ଡାକିଲେ । ମିଳାଟାଏ

ଯୁଦ୍ଧକୁ ଡାକୁଚି। ପୁଣି ଦ୍ୱନ୍ଦ୍ୱଯୁଦ୍ଧକୁ। ତୁରାନିଆନ୍ ସୈନ୍ୟମାନେ ହସିପକେଇଲେ। ଆଫ୍ରାସିୟାବ୍ ବି ପଛେଇ ଯାଉଥିଲେ। ରୁସ୍ତମ୍ ଏମିତି ଭାଷା ପ୍ରୟୋଗ କଲେ ଯେ, ସେ ବାଧହେଇ ଦ୍ୱନ୍ଦ୍ୱଯୁଦ୍ଧ କଲେ। ଆଫ୍ରାସିୟାବ୍ ସେ ଯୁଗର ଜଣେ ମହାନ୍ ବୀର। ସେ କଳାଘୋଡ଼ାକୁ ପସନ୍ଦ କରନ୍ତି। ତାଙ୍କର ଘୋଡ଼ାଟି ବି ଖୁବ୍ ବଳୁଆ ଓ ସୁନ୍ଦର। ସେ କଳାସାଞ୍ଜୁ ପିନ୍ଧିଥାଆନ୍ତି।

ଦୁଇବୀରଙ୍କ ମଧରେ ଭୀଷଣ ଯୁଦ୍ଧ ଲାଗିଲା। ପ୍ରାୟ ଘଣ୍ଟେଖଣ୍ଡେ ସେମାନେ ଲଢ଼ିଲେ। ରୁସ୍ତମ୍ ଆଫ୍ରାସିୟାବ୍‌ଙ୍କୁ ଘୋଡ଼ାରୁ ଖସାଇଦେଲେ; ମାତ୍ର ତାଙ୍କର ସୈନ୍ୟମାନେ ଆସି ତାହାଙ୍କୁ ରକ୍ଷାକରିନେଲେ। ରୁସ୍ତମ୍ ତାଙ୍କର ଲମ୍ୱା ତଲୁଆର୍ ଚଳେଇ ଶହ ଶହ ସୈନ୍ୟଙ୍କୁ ଏକାକୀ ହାଣିପକାଇଲେ। ସଞ୍ଜବେଳକୁ ସେ ପ୍ରାୟ ହଜାରେ ତୁରାନିଆନ୍‌ଙ୍କୁ ମାରିପକାଇଥିଲେ।

ସେ ଯୁଦ୍ଧରେ କାଇକୋବାଦ୍ ଜିଣିଲେ। ସମସ୍ତେ ରୁସ୍ତମ୍‌ଙ୍କ ବୀରତ୍ୱର ପ୍ରଶଂସାକଲେ। ତୁରାନିଆନ୍‌ମାନେ ହାରି ପଳାଇଲେ।

## ରୁସ୍ତମ୍ ଓ ଧଳାଦୈତ୍ୟ

ସେ ସମୟରେ କାଇକାଉସ୍ ହେଲେ ପାରସ୍ୟର ନୂଆ ସମ୍ରାଟ୍। ବଡ଼ ଅଭିମାନୀ, ବଡ଼ ଗର୍ବୀ ସେ। ପୁଣି ବୋକାଙ୍କର ଗୁରୁ। ସିଏ ଭାବୁଥିଲେ, ଦୁନିଆରେ ସବୁଠୁ ବଡ଼ ସିଏ। ତାଙ୍କୁ ଯୁଦ୍ଧରେ କେହି ଜିତି ପାରିବେନି। ସେ ଖାଲି ମଉଜ-ମଜଲିସ୍‌ରେ ଚଳୁଥାଆନ୍ତି।

ଥରେ ତାଙ୍କ ଉଆସକୁ ଜଣେ ଭାଟ ଆସିଲା। ସେ ମାଜାନ୍‌ଡେରାନ୍ ଦେଶର ବହୁତ ପ୍ରଶଂସା କଲା। ସେ ଭାଟ ଗାଉଥିଲା—

ଦୁନିଆରେ ବହୁ— ଦେଶ ଦେଖିଚି ହେ
ଏମନ୍ତ ମୁଲକ ଦେଖି ତ ନାହିଁ,
ମୁଲକ ତାହାକୁ କହିବାଟା ମିଛ

ଆକାଶ ତଳେ ସେ ସରଗଭୂଇଁ ।
ସେ ଦେଶରେ ଫୁଟେ ସେ ଯେଉଁ ଗୋଲାପ,
ତାହାର ତୁଳନା ନାହିଁ ତ ନାହିଁ,
ପବନ ସେ ଦେଶେ ଧୀର ଧୀର ବହେ,
ଦେଶଟି ପରା ସେ ବସନ୍ତ-ଭୂଇଁ ।
ବୁଲ୍‌ବୁଲ୍ ତହିଁ ନିତି ଗୀତ ଗାଏ
ଶତ ପକ୍ଷୀ ତହିଁ ସଙ୍ଗୀତ ଗାଇ,
ଆନନ୍ଦ ଲହରେ ଭରିଦେଇଥାନ୍ତି
ସେ ଦେଶଟି ପରା ଗୀତର ଭୂଇଁ ।
ସେ ଦେଶର ଶୋଭା ଜଗତେ ଅତୁଳ,
ସେ ଦେଶ ସମାନ ନାହିଁ ହେ ନାହିଁ,
ଆନ ଦେଶ ତା'ର ପାଦର ମଳି ହେ,
ଦେଶଟି ପରା ଶୋଭାର ଭୂଇଁ ।''

କାଇକାଉସ୍ ଏ ଗୀତ ଶୁଣିଲାକ୍ଷଣି ଲୋଭାଇ ଉଠିଲେ । ଗୀତ ଶେଷ ହେଲା । ସେ ସିଂହାସନରୁ ଉଠିପଡ଼ିଲେ । ଆଉ ହାତ ଉପରକୁ ଟେକିଲେ । କହିଲେ, ''ଚାରଣ, ସତେ... ସତେ ସେ ଦେଶ ଏଡ଼େ ସୁନ୍ଦର ?''

—''ସମ୍ରାଟ୍ ! ମୋ' କଥା ସତ କି ମିଛ ଥରେ ନିଜେ ଦେଖିକରି ଆସନ୍ତୁ ନା ! ମୋ' କଥା ମିଛ ହେଇଥିଲେ ମୋତେ ଆପଣଙ୍କ ତଲୁଆର୍‌ରେ ନବେଖଣ୍ଡକରି କାଟିପକାଇବେ ।''

—''ନା... ନା, ଭାଟ, ସେ କଥା ନୁହେଁ । ତେବେ, ଶୁଣନ୍ତୁ ସଭାସଦ୍‌ମାନେ, ଶୁଣ ଭାଟ, ସେ ଦେଶ ଖୁବ୍ ଶୀଘ୍ର ମୋ' ଦେଶ ହେଇ ରହିବ । ସେ ଦେଶ ହେବ ପାରସ୍ୟର ବିରାଟ ସାମ୍ରାଜ୍ୟର ଗୋଟାଏ ଅଂଶ ! ଏହା ହେବଇ ହେବ । ଏହା ପାରସ୍ୟ ସମ୍ରାଟ୍ କାଇକାଉସ୍‌ର ପଣ !''

ସଭାସଦ୍‌ମାନେ ଚମକିଉଠିଲେ । କାଇକାଉସ୍ ଏ କ'ଣ କହୁଛନ୍ତି ! ସେ ଦେଶ ରାକ୍ଷସମାନଙ୍କ ଦେଶ । ସେମାନେ ସହଜ ଜନ୍ତୁ ନୁହନ୍ତି । ସେମାନଙ୍କ ଦେହରେ ଅମାପ ବଳ । ବଡ଼ ଦୁର୍ଦ୍ଦାନ୍ତ ସେମାନେ । ନାନା

ଅସ୍ତ୍ରଶସ୍ତ୍ରର ବ୍ୟବହାର ସେମାନେ ଜାଣନ୍ତି। ସେମାନେ ଶତ୍ରୁ ହେଲେ, କ'ଣ ଯେ ଘଟିବ, କିଏ କହିବ! କାଇକାଉସ୍‌ଙ୍କ ପାଇକ, ସେନାପତି ସମସ୍ତେ ବ୍ୟସ୍ତ ହେଇପଡ଼ିଲେ। ସେମାନେ ସମ୍ରାଟ୍‌ଙ୍କ କଥା ଜାଣନ୍ତି। ବଡ଼ ବେହିସାବୀ ସିଏ। ନିଜକୁ ବହୁତ ବଡ଼ ବୋଲି ମଣନ୍ତି। ତେଣୁ ସେ ଆଗତ-ଭବିଷ୍ୟ ଭାବିପାରନ୍ତିନି। ହୋହସ୍ତ ହେଇ ଯାହା ତାହା କହିପକାନ୍ତି। ତାଙ୍କୁ ପରାମର୍ଶ ଦେବା ଯାହା, କାଲା ଆଗରେ ମୂକାଚୋବାଇବା ତାହା। ବୀର ଜାଲ୍ ସାହସ କଲେ। ସେ ସମ୍ରାଟ୍‌ଙ୍କୁ ବୁଝାଇଲେ, ଏ ପ୍ରକାର ଇଚ୍ଛା ସେ କରନ୍ତୁନି। କାଇକାଉସ୍ କିଛି ଶୁଣିଲେନି। ଦେଶରେ ସାଜସାଜ ଡାକ ପଡ଼ିଲା।

କାଇକାଉସ୍ ପାରସ୍ୟର ବିରାଟ ସେନାଦଳ ଘେନି ଚାଲିଲେ। ଲକ୍ଷ୍ୟ ତାଙ୍କର ମାଜାନ୍‌ଡେରାନ୍ ଜୟ କରିବା। ତାଙ୍କରି ଅନୁପସ୍ଥିତିରେ ଦେଶରେ କିଛି ଗୋଳମାଳ ହୋଇପାରେ; ଆଉ କେହି ଶତ୍ରୁ ଆକ୍ରମଣ କରିପାରେ। ତା'ଛଡ଼ା ସମ୍ରାଟ୍‌ଙ୍କ ସ୍ତ୍ରୀ ଓ ପରିବାର ଅଛନ୍ତି। ଜାଲ୍ ଆଉ ରୁସ୍ତମ୍ ସେସବୁ ଦାୟିତ୍ୱରେ ରହିଲେ।

ପାରସ୍ୟର ପାଇକମାନେ ପହିଲେ ସିନା କୁନ୍ଥୁକୁନ୍ଥୁ ହେଉଥିଲେ; ମାତ୍ର ଯୁଦ୍ଧଭୂଇଁରେ ସେମାନେ ସିଂହପରି ଲଢ଼ିଲେ। ବହୁ ରାକ୍ଷସଙ୍କୁ ହାଣିପକାଇଲେ। ରାକ୍ଷସମାନେ ପଛଘୁଞ୍ଚା ଦେଲେ। ମନେ ହେଲା ମାଜାନ୍‌ଡେରାନ୍ ହାରିବ, ତା' ରଜା ବନ୍ଦୀ ହେବେ। କାଇକାଉସ୍ ଖୁବ୍ ଖୁସି ହୋଇଉଠିଲେ। କିନ୍ତୁ ତାଙ୍କର ଏ ଖୁସି ବେଶୀ ବେଳ ରହିଲାନି। ରାକ୍ଷସମାନଙ୍କର ଆଉ ଗୋଟିଏ ଦଳ ଥିଲେ ଏଲ୍‌ବର୍ଜରେ। ସେମାନଙ୍କ ଦଳପତି ନାଁ ଥିଲା ଧଳାଦୈତ୍ୟ। ତାହାର ଅନେକ ସୈନ୍ୟ। ପୁଣି ଏ ଦୈତ୍ୟମାନେ ଥିଲେ ଅନେକ ମୁଣ୍ଡିଆ; କିଏ ଦୁଇମୁଣ୍ଡିଆ— କିଏ ତିନିମୁଣ୍ଡିଆ; କିଏ ବା ଚାରିମୁଣ୍ଡିଆ।

ଏମାନେ ଅଦ୍‌ଭୁତ ଯୁଦ୍ଧକୌଶଳ ଦେଖାଇଲେ। ଆକାଶରୁ ଏମାନେ ବଜ୍ରପରି ପଥର ସବୁ ଫିଙ୍ଗିଲେ। ଅନେକ ଦୂରରୁ ଆସି ଢିମା ଢିମା ନିଆଁପଥର ପାରସ୍ୟ ସୈନ୍ୟଦଳ ଉପରେ ପଡ଼ିଲା। ପାରସ୍ୟ ସୈନ୍ୟମାନଙ୍କ ଭିତରେ ହା-ହା ରୋଳ ପଡ଼ିଗଲା। ସେମାନେ କ'ଣ କରିବେ, କିଛି ଠିକ୍ କରିପାରିଲେନି। ଏ ପ୍ରକାର ଶତ୍ରୁ ସଙ୍ଗେ

କିଏ ବା କେମିତି ଲଢ଼ିବେ ? ସେମାନେ ବହୁ ସଂଖ୍ୟାରେ ମଲେ। ସେମାନେ ଜାଣିଲେ, ଏଥର ରକ୍ଷାନାହିଁ— ହାରିବେ ନିଶ୍ଚୟ। ପଛକୁ ଫେରିଲେ ସେମାନେ। ପାରସ୍ୟ ହାରିଲା। ସମ୍ରାଟ୍ କାଇକାଉସ୍ ବନ୍ଧାହେଲେ। ଧଳାଦୈତ୍ୟ ବନ୍ଦୀ ରଜାଙ୍କୁ ନେଇ ମାଜାନଡେରାନ୍ ରାଜାଙ୍କୁ ଭେଟିଦେଲା। ସେ ପାରସ୍ୟ ରାଜାଙ୍କୁ ଗୋଟାଏ ଅନ୍ଧାରିଆ ଗୁହାରେ ଫିଙ୍ଗିଦେଲେ।

ଏ ଖବର ପାରସ୍ୟରେ ପହଞ୍ଚିଲା। ଜାଲ୍ ସ୍ତମ୍ଭୀଭୂତ ହେଇଗଲେ। ରୁସ୍ତମ୍ ରାଗିଉଠିଲେ। ସିଏ ଜାଲ୍‌ଙ୍କୁ କହିଲେ, "ବାବା, ଆପଣ ଦେଶକୁ ସମ୍ଭାଳିବେ। ମୁଁ ଚୁପ୍ ରହିପାରିବିନି। ମୋ ଦେଶ ପ୍ରତି ଅପମାନ! ସମ୍ରାଟ୍ ବୋକା। ସେ ଗୋଟାଏ ଅବାସ୍ତବ କାମ କରିପକାଇଲେ। ମାତ୍ର ଏ କଥାଟା ଆଉ କାଇକାଉସ୍‌ଙ୍କର କଥା ହେଇ ରହିନି; ଏହା ଏବେ ସମଗ୍ର ପାରସ୍ୟ ଦେଶର କଥା ହେଇଯାଇଚି। ଦେଶର ଇଜ୍ଜତ୍ ରକ୍ଷା କରିବା ଲାଗି ଆମକୁ ଅନେକ କିଛି କରିବାକୁ ହେବ। ମୁଁ ଯାଉଚି ବାବା! ମୁଁ ଯାଉଚି ଶାହାନ୍‌ଶାହଙ୍କୁ ମୁକୁଳାଇଆଣିବି। ମୋତେ ଆଶୀର୍ବାଦ କରନ୍ତୁ।"

ରୁସ୍ତମ୍ ତାଙ୍କର ସେଇ ପ୍ରିୟ ଘୋଡ଼ା ରାକୁଶ୍‌କୁ ସଜାଇଲେ। ଏକାକୀ ସେ ଚାଲିଲେ ମାଜାନ୍‌ଡେରାନ୍ ପଥରେ। ପ୍ରତିଜ୍ଞା କଲେ, ସେ ରାଜାଙ୍କୁ ଉଦ୍ଧାର କରିବେ; ନହେଲେ ସେ ଆଡ଼େ ମୃତ୍ୟୁ ବରିନେବେ।

ରୁସ୍ତମ୍ ସାଧାରଣ ବାଟରେ ଗଲେନି। ସେ ଗୋଟାଏ ଅପନ୍ତରା ବାଟ ବାଛିନେଲେ। ଏ ବାଟରେ ନଈନାଳ ବହୁତ। ବିପଦ-ଆପଦ ବହୁତ। କିନ୍ତୁ ଦୂରତା ବେଶ୍ କମ୍।

ରାତିରେ ସେ ଜଙ୍ଗଲଭିତରେ ଶୋଇଥାନ୍ତି, ହଠାତ୍ ଗୋଟାଏ ବଡ଼ ଗର୍ଜନରେ ନିଦ ଭାଙ୍ଗିଗଲା। ରୁସ୍ତମ୍ ଉଠିବସିଲେ। ଦେଖିଲେ ଭୟଙ୍କର ସିଂହଟେ ରାକୁଶ୍‌କୁ ଆକ୍ରମଣ କରୁଚି; ଆଉ ରାକୁଶ୍ ତା' ଖୁରାରେ ଆଉ ଦାନ୍ତରେ ନିଜକୁ ରକ୍ଷାକରୁଚି। ରୁସ୍ତମ୍ ଦେଖିଲେ, ରାକୁଶ୍ ଶେଷରେ ସିଂହଟାକୁ ଯୁଦ୍ଧରେ ମାରିପକାଇଲା।

ରୁସ୍ତମ୍ ଆନନ୍ଦରେ ରାକୁଶ୍‌କୁ କହିଲେ "ରାକୁଶ୍, ତୁ ଭୁଲ୍

କଲୁ। ମୋତେ ଉଠେଇଲୁନି କିଆଁ ? ଆରେ, ସିଂହଟା ପରା ଜଙ୍ଗଲର ରଜା ! ତା' ସଙ୍ଗେ କେଡ଼େ ବୀରତ୍ୱରେ ଲଢ଼ିଲୁ। ସାବାସ୍ ରାକୁଶ୍ ! ସାବାସ୍ ତୋତେ ! ମାତ୍ର ଆଉ କେବେ ଏମିତି ବଦ୍‌ସାହସ କରିବୁନି। ସେଭଳି ଘଟଣା ଆସିଲେ, ମୋ' କାନପାଖରେ ଡାକିବୁ ରେ ରାକୁଶ୍। ତୁ ଯେ ମୋର ସାହାଭରସା ! ତୋ'ର କ'ଣ ହେଇଗଲେ, ମୋତେ କିଏ ବୋହିନେବ ! କ'ଣ . . . ମୋ କଥା ବୁଝୁଚୁଟି !'' ରାକୁଶ୍ ମୁଣ୍ଡ ହଲାଇଲା।

ଜଙ୍ଗଲ ସରିଲା। ତା' ପରେ ଆସିଲା ମରୁଭୂଇଁ। ସେ ଦିଗନ୍ତବିସ୍ତାରୀ ବାଲିର ଶେଯ। ତା' ଭିତରେ ବାଟ ନାହିଁ। ଅବାଟ ବି ନାହିଁ। ସବୁଟା ବାଟ। ପୁଣି ସବୁଟା ଅବାଟ ! ତିନିଦିନ କାଳ ରୁସ୍ତମ୍ ଓ ରାକୁଶ୍ ଚାଲିଲେ। କୋଉଁଠି ପାଣିଟୋପେ ନାହିଁ। ଆକାଟା ଖୋଲା। ମେଘ ନାହିଁ। ସୂର୍ଯ୍ୟକିରଣ ସିଧା ସିଧା ମରୁଭୂଇଁର ବାଲିଗୁଡ଼ାକ ଉପରେ ପଡ଼ିଚି; ଭାଜୁଚି। ପାଖରେ ଗଛ ନାହିଁ କି ଛାଇ ନାହିଁ। ମରୂଦ୍ୟାନ ନାହିଁ। ଝରଣା ନାହିଁ।

ମହାବୀର ରୁସ୍ତମ୍। ମାତ୍ର ସେ ବ୍ୟସ୍ତ ହୋଇପଡ଼ିଲେ। ସେଇ ତାତିଲା ବାଲିଉପରେ ସେ ଆଣ୍ଠୋଇପଡ଼ି ପ୍ରାର୍ଥନା କଲେ, ''ହେ ଦେବତାମାନେ, ଯଦି ମୋ ଉପରେ ସନ୍ତୁଷ୍ଟ ଅଛ, ମୋ କଥାର ଉତ୍ତର ଦିଅ !''

ତାଙ୍କର ଡାକ ଦେବତାମାନେ ଶୁଣିଲେ। ବଣୁଆ ମେଣ୍ଢାଟିଏ ତାଙ୍କ ଆଗରେ ଦେଖାଦେଲା। ରୁସ୍ତମ୍ ଜାଣିଲେ, ଏ ଗୋଟାଏ ଶୁଭଚିହ୍ନ। ତାଙ୍କୁ ଦେବତାଙ୍କର ଆଶୀର୍ବାଦ ମିଳିଲା। ସେ ମେଣ୍ଢାଟି ସେମାନଙ୍କ ଆଗେ ଆଗେ ଚାଲିଲା। ରୁସ୍ତମ୍‌ଙ୍କୁ ପିଠିରେ ବସାଇ ରାକୁଶ୍ ମେଣ୍ଢା ପଛରେ ଗଲା। ଖୁବ୍ ଶୀଘ୍ର ସେମାନେ ଗୋଟେ ମରୂଦ୍ୟାନରେ ପହଞ୍ଚିଲେ। ଚାରିଆଡ଼େ ଘାସ-ଲତାରେ ଶାଗୁଆ ଦିଶୁଚି। ଛୋଟ ଝରଣାଟିଏ ଅଛି। ସେମାନେ ଆଗେ ପାଣି ପିଇନେଲେ। ଏ ସମୟରେ ଗୋଟିଏ ବଣୁଆ ଗଧ ସେଠିକି ପାଣି ପିଇବାକୁ ଆସିଲା। ରୁସ୍ତମ୍ ତାକୁ ମାରି ତା' ମାଂସ ରାନ୍ଧି ଖାଇଲେ। ରାକୁଶ୍ ଲାଗି ତ ବହୁତ ଖାଦ୍ୟ ଥିଲା।

ରାତି ମାଡ଼ିଆସୁଥାଏ। ବୀର ରୁସ୍ତମ୍ ତାଙ୍କ ଦିହକୁ ମୋଟା ଚଦରରେ ଘୋଡ଼ାଇଦେଲେ। ତାଙ୍କୁ ନିଦଲାଗିଗଲାଣି – ସେ ଶୋଇବେ। ରାକୁଶ୍‌କୁ କହିଲେ, 'ଦେଖ, ମୁଁ ବିଶ୍ରାମ ନେଉଚି। ମାନେ... ଶୋଉଚି। ଆପଦ-ବିପଦ ଆସିଲେ ମୋତେ ଉଠାଇବୁ। ନହେଲେ, ଗାଳି ଆଉ ମାଡ଼ ଖାଇବୁ।'' ସେ ରାକୁଶ୍‌କୁ ଆଉଁସିଦେଲେ। ତା'ପରେ ଶୋଇପଡ଼ିଲେ।

ରାତି ବଢ଼ିଲା। ରାତି ଅଧାହେଲା ବେଳେ ହଠାତ୍ ଗୋଟାଏ ଡ୍ରାଗନ୍ ଆସିଲା। ଏ ଗୋଟେ ବିଚିତ୍ର ଜୀବ। ତିନିଟା ତା'ର ମୁଣ୍ଡ। ମୁଣ୍ଡରେ ଗୋଜିଆ ଗୋଜିଆ ଶିଙ୍ଘ। ସାପପରି ଲମ୍ବା ଜିଭ। ବିରାଟ ଲମ୍ବା ଦିହ। ଗୋଟେ ଅଜଗର ସାପପରି ଲମ୍ବା। ସେ ଦିହରେ କୁମ୍ଭୀର ଲାଞ୍ଜପରି କରତ ଅଛି। ପକ୍ଷୀ ଗୋଡ଼ପରି ଗୋଡ଼। ଗୋଡ଼ରେ ଲମ୍ବା ମୁନିଆଁ ନଖଗୁଡ଼ାଏ।

ଜୀବଟା ବୋବେଇ ଉଠିଲା। ଯୋଉ ଆଡୁ ଆସିଥିଲା, ସେଇ ଆଡ଼କୁ ଚାଲିଗଲା। ଅନ୍ଧାର ଭିତରେ ଲୁଚିଗଲା। ରାକୁଶ୍‌ର ଡାକ ଶୁଣି ରୁସ୍ତମ୍ ଉଠିଲେ। ଚାରିଆଡ଼କୁ ଚାହିଁଲେ – କୋଉଠି କିଛି ନାହିଁ। ଏ ରାକୁଶ୍‌ଟା ବଡ଼ ସୈତାନ୍ ହେଲାଣି– ମିଛଟାରେ ଉଠାଇଦେଲା। ଆଃ! କି ବଢ଼ିଆ ନିଦ ହେଇଥିଲା ରେ! ଯୋଉ କଷ୍ଟ! ଯୋଉ କ୍ଳାନ୍ତି! ସବୁ ତ ବିଗାଡ଼ି ଦେଲା ରାକୁଶ୍! ସେ ତାକୁ କହିଲେ, ''ଦେଖ, କଅଣ କହିଲେ କ'ଣ ବୁଝୁଚୁ କି ରେ! ତୋତେ ପରା କହିଲି, ବିପଦରେ ଉଠାଇବୁ! ଏମିତି ମିଛରେ ଉଠାଇଲେ ମୋ'ର ହାନି ହେବ। ମୁଁ ଶୋଇପାରିବିନି। ତୋ'ଉପରେ ରାଗିବି। ବୁଝିଲୁ... ?''

ରାକୁଶ୍ ବୁଝିଲାପରି ହେଁ-ହେଁ କଲା। ମାତ୍ର ଅସଲ କଥା ସିଏ ବୁଝାଇବ ବା କିପରି? ସେ ଦୁଷ୍ଟ ଜୀବଟା ତ ଆଉ ଦେଖାଯାଉନି। କେମିତି ସେ ତା' ମାଲିକଙ୍କୁ ଏତେକଥା କହିବ! ସେ ତ ମଣିଷର ଭାଷା କହିପାରେନି!

ରୁସ୍ତମ୍ ଶୋଇପଡ଼ିଲେ। ଠିକ୍ ଆଉ ଥରେ ନିଦ ଲାଗିଆସୁଚି, ସେ ଜୀବଟି ପୁଣି ଦେଖାଦେଲା। ରାକୁଶ୍ ପୁଣି ବୋବାଇଉଠିଲା।

ରୁସ୍ତମ୍ ନିଦ ମଳମଳ ଆଖିରେ ଅନାଇଁଲେ, ହେଲେ ଦେଖିଲେନି କିଛି । ସେ ବିରକ୍ତ ହେଲେ । ପୁଣି ରାକୁଶ୍‌କୁ ଗାଳିଦେଲେ । ରାକୁଶ୍‌ର କ'ଣ ହେଇଚି ! ସିଏ ଏମିତି ବାରବାର ବୋବାଉଚି କିଆଁ ?

ରାତି ସରିଯାଉଚି, ସକାଳ ହେଇଆସୁଚି । ଆକାଶର ପୂର୍ବଭାଗଟା ନାଲିଆ ଦେଖାଗଲାଣି । ହଠାତ୍ ସେ ଜୀବଟା ପୁଣି ଦେଖାଗଲା । ରାକୁଶ୍ ଅପେକ୍ଷା କଲା – ଜୀବଟା ଟିକେ ପାଖକୁଆସୁ – ସେ ବୋବାଇବ । ଜୀବଟା ମାଡ଼ିଆସୁଚି । ରାକୁଶ୍ ହଠାତ୍ କରି ହିଣିହିଣାଇ ଉଠିଲା ।

ରୁସ୍ତମ୍ ଉଠିବେ ନ ଉଠିବେ ହେଇ ଉଠିବସିଲେ । ଆଲୁଅ ଯୋଗୁଁ ଟିକେ ଫରଚା ଦିଶୁଚି । ରାକୁଶ୍‌ର ଡାକରେ ଡ୍ରାଗନ୍‌ଟା ଲୁଚିବାର ଚେଷ୍ଟାକରୁଥିଲା, ରୁସ୍ତମ୍ ତାକୁ ଦେଖିପକାଇଲେ । ସେ ଜାଣିପାରିଲେ ଗୋଟାଏ ମସ୍ତବଡ଼ ବିପଦ ତାଙ୍କ ପାଇଁ ଅପେକ୍ଷା କରି ରହିଚି ।

ରୁସ୍ତମ୍ ଟିକେ ବି ଅପେକ୍ଷାକଲେନି, ଖଣ୍ଡା ଧରି ଆଗକୁ ମାଡ଼ିଗଲେ । ଡ୍ରାଗନ୍‌ଟା ବି ଲଢ଼େଇକି ତିଆର ହେଇ ଥାଏ । ଦି'ଜଣଙ୍କ ଭିତରେ ଘମାଘୋଟ ଯୁଦ୍ଧ ହେଲା । ଡ୍ରାଗନ୍ ସହିତ ମଣିଷ ଲଢ଼ିବା ଅସମ୍ଭବ । ହୁଏତ ରୁସ୍ତମ୍‌ଙ୍କର ଏ ଲଢ଼େଇ ବି ଶେଷ ଲଢ଼େଇ ହେଇଥାଆନ୍ତା । ରାକୁଶ୍ ପଶୁ ସିନା – ତା'ର ଅନେକ ବୁଦ୍ଧି ! ମାଲିକ ସହିତ ସିଏ ଡ୍ରାଗନ୍ ବିରୁଦ୍ଧରେ ଯୁଦ୍ଧରେ ମାତିଗଲା । ତା'ର ଲମ୍ବ ଗୋଡ଼ର ତଳେ ଥିବା ଲୁହା ଭଳି ଟାଣୁଆ ଖୁରାରେ ସେ ଡ୍ରାଗନ୍‌କୁ ଲାତ ପରେ ଲାତ ପକାଇ ଅସ୍ତବ୍ୟସ୍ତ କରିଦେଲା । ଦାନ୍ତରେ ବି ଡ୍ରାଗନ୍‌କୁ କାମୁଡୁଥାଏ । ଘୋଡ଼ା ଆଉ ମାଲିକ ମିଶି ଡ୍ରାଗନ୍‌କୁ କାବୁ କରିଦେଲେ । ଜୟ ହେଲା ରୁସ୍ତମ୍‌ଙ୍କର । ସିଏ ରାକୁଶ୍‌କୁ ଧନ୍ୟବାଦ ଜଣାଇଲେ ।

ରୁସ୍ତମ୍‌ଙ୍କୁ ଏଥର ଏଲବର୍ଚ୍ଚ ପାହାଡ଼ ଭିତରେ ଯିବାକୁ ପଡ଼ିଲା । ଏଠି ଗିରିପଥଗୁଡ଼ିକ ବଡ଼ ଭୟଙ୍କର । ବେଳେବେଳେ ରାକୁଶ୍‌କୁ କାନ୍ଥଭଳି ସିଧା ପାହାଡ଼ ଉଠିବାକୁ ହେଉଥାଏ । ସେ ସମୟରେ ରୁସ୍ତମ୍ ରାକୁଶ୍‌ର ଲାଞ୍ଜ ଧରି ଓହଳିରହନ୍ତି । ରାକୁଶ୍ ତାଙ୍କୁ ନେଇ ଉଠେ । ଥରେ ଥରେ ଉଭୟେ ଖସିପଡ଼ନ୍ତି । ଖଣ୍ଡିଆ ଖାବରା ହୁଅନ୍ତି । ପୁଣି ଉଠନ୍ତି । ପଥର ଉପରେ ଠେସି କୁଟି ହେଇ ସେମାନେ କଷ୍ଟ ପାଇ ପାଇ ଚାଲିଥାନ୍ତି । ଥରେ ରାକୁଶ୍ ଗୋଟେ ଭୟଙ୍କର ବିପଦରେ ପଡ଼ିଗଲା ।

ସେ ଜାଣେନି, ଠିକ୍ ପାହାଡ଼ର ଗୋଟେ ଅତଟିଆ ଜାଗା ଉଠିଲାବେଳକୁ ସେ ପାଖେ ଅତଳ ଗାତ। ବିଚରାର ଆଗ ଗୋଡ଼ ଦି'ଟା ଗାତରେ ଓ ପଛଗୋଡ଼ ଦି'ଟା ପଥରରେ ଥାଏ। ସେ ଗାତ ମୁହଁରେ କେତେଗୁଡ଼ାଏ ଲଟାବୁଦା ଥାଏ। ସେଇଠି ସିଏ ଲଟକିଗଲା। ରାକୁଶ୍ ବିକଳରେ ବୋବାଇ ଉଠିଲା। ତା' ଭାଷାରେ ସିଏ କହୁଥାଏ, 'ମୁଁ ବିପଦରେ ପଡ଼ିଲି। ମୋତେ ରକ୍ଷାକର !!'

ରୁସ୍ତମ୍ ମୁହୂର୍ତ୍ତକ ଭିତରେ ସବୁକଥା ବୁଝିନେଲେ। ସେ ସଙ୍ଗେ ସଙ୍ଗେ ତାଙ୍କ ଅଣ୍ଟାରେ ଗୁଡ଼ାଯାଇଥିବା ଲମ୍ବା ସିଲ୍‌କ କପଡ଼ାକୁ ଖୋଲି-ପକାଇଲେ। ରାକୁଶ୍‌କୁ ତହିଁରେ ବାନ୍ଧିଲେ; ଆଉ ଟାଣି ବାହାରକଲେ।

ଭାଗ୍ୟକୁ ବାଟରେ ଖାଦ୍ୟର କିଛି ଅଭାବ ପଡ଼ିଲାନାହିଁ। ମିରିଗ ଜାତିର ଅନେକ ଜୀବ ଦଳଦଳ ହେଇ ସେଠି ଜଙ୍ଗଲରେ ବୁଲୁଥାଆନ୍ତି। ରୁସ୍ତମ୍ ଲାଖକରି ଶର ଛାଡ଼ିଦେଲେ; ସେଥିରୁ ଗୋଟିଏ ଝଡ଼ିପଡ଼େ। ତା'ରି ମାଂସ ରାନ୍ଧି ଖା'ନ୍ତି। ପାହାଡ଼ରେ ଅନେକ ଘାସୁଆପଡ଼ିଆ। ସ୍ଥାନେ ସ୍ଥାନେ ଝରଣା। ତେଣୁ ଘୋଡ଼ାପାଇଁ ବା ମଣିଷପାଇଁ ଖାଦ୍ୟ ଯଥେଷ୍ଟ ମିଳୁଥିଲା। ରୁସ୍ତମ୍ ଓ ରାକୁଶ୍ ଖାଦ୍ୟ ପାଇଁ ବିଶେଷ କିଛି ଅସୁବିଧା ଭୋଗିନାହାନ୍ତି।

ଏଲ୍‌ବର୍ଜ୍ଜ ଉଠିବା ସରିଲା। ରୁସ୍ତମ୍ ସ୍ୱସ୍ତିରେ ନିଃଶ୍ୱାସ ଛାଡ଼ିଲେ। ଏଲ୍‌ବର୍ଜ୍ଜର ସେପାରେ ମାଜାନ୍‌ଡେରାନ୍। ରୁସ୍ତମ୍‌ଙ୍କ ଆଖିରେ ଗୋଟାଏ ଚମତ୍କାର ଦୃଶ୍ୟ ଭାସିଗଲା— ଶାଗୁଆ ଜଙ୍ଗଲର ରେଖା ଦିଗହଜା ଦିଗ୍‌ବଳୟ ଯାଏ ବ୍ୟାପିଚି। ଏ ତ ଗୋଟେ ଅପୂର୍ବ ଦୃଶ୍ୟ !

ସେମାନେ ସଞ୍ଜବେଳକୁ ଗୋଟାଏ ସୁନ୍ଦର ନଈକୂଳରେ ପହଞ୍ଚିଲେ। ସେଠି ସେ ରହିଲେ। ରାତିରେ ଅନ୍ୟ କୋଉଠିକି ଯିବାକୁ ତାଙ୍କର ମନ ବଳିଲାନି। ଆଶ୍ଚର୍ଯ୍ୟର କଥା, ଏଠି ତାଙ୍କ ପାଇଁ ବଢ଼ିଆ ଖାନା, ରାକୁଶ୍‌ପାଇଁ ଦାନା, ଆଉ କିଛି ପାନୀୟ କିଏ ଜଣେ ରଖିଦେଇଥିଲା। ସେମାନେ ଖିଆପିଆ ଠିକ୍ ଅଧାଅଧି କରିଥାଆନ୍ତି, ଜଣେ ଯୁବତୀ ସେଠି ପହଞ୍ଚିଲା। ସେ ସିଧା ରୁସ୍ତମ୍‌ଙ୍କ ପାଖକୁ ଗଲା। ବୀର ରୁସ୍ତମ୍ ଆନନ୍ଦରେ ଯୁବତୀଟି ହାତରେ ପିଆଲାଏ ପାନୀୟ ଧରାଇଦେଲେ। ସଙ୍ଗେ ସଙ୍ଗେ ସେ ସୁନ୍ଦରୀ ସ୍ତ୍ରୀଟି ଗୋଟାଏ

କାଳୀ ରାକ୍ଷାସୁଣୀରେ ପରିଣତ ହେଇଗଲା। ରୁସ୍ତମ୍ ସଙ୍ଗେ ସଙ୍ଗେ ଖଣ୍ଡା ଉଠାଇଲେ, ତାହାକୁ ହାଣିପକାଇଲେ। ମାତ୍ର ଏ ଘଟଣା ପରେ ସେ ନିଜକୁ ବୁଝାଇଲେ, ବାବା, ଏଥର ରାକ୍ଷସ-ଭୂଇଁରେ ପହଞ୍ଚିଲ। ବୁଝିବିଚାରି, ଚାରିଆଡ଼କୁ ଚାହିଁ କାମ କର। ନହେଲେ, ଅତି ଦୁଃଖର କଥାସବୁ ଘଟିଯିବ। ସେ ନିଶ୍ଚୟ ସାବଧାନ ହେବା ଉଚିତ।

ଏହାପରେ ସେମାନେ ଅନ୍ଧାର ରାଜ୍ୟରେ ପହଞ୍ଚିଲେ। ସେ ଖଣ୍ଡକରେ ଦିନରାତି ଅନ୍ଧାର। ବହୁ କଷ୍ଟରେ ଅନ୍ଧାର ଭିତରେ ରାକୁଶ୍ ଯୋଗୁଁ ରୁସ୍ତମ୍ ସେ ପାଖକୁ ଯାଇପାରିଲେ। ସେ ଥିଲା ଏକ ଚମତ୍କାର ମୁଲକ।

ଏ ମୁଲକଟା ମାଜାନ୍‌ଡେରାନ୍‌ର ଗୋଟାଏ ଅଂଶ। ଏଠି ଜଣେ ରାଜପ୍ରତିନିଧି ଥାଆନ୍ତି। ରୁସ୍ତମ୍ ତାଙ୍କୁ ଆକ୍ରମଣ କଲେ। ଆଶ୍ଚର୍ଯ୍ୟ କଥା, ରୁସ୍ତମ୍ ଏକା ଦଳ ଦଳ ରାକ୍ଷସ ପାଇକଙ୍କୁ ହରାଇଦେଲେ। ସେ ରାଜପ୍ରତିନିଧିଙ୍କୁ ବନ୍ଦୀ କଲେ। ଏହାଙ୍କ ନାଁ ଥିଲା ଔଲାଦ୍।

ବନ୍ଦୀ ଔଲାଦ୍‌ଙ୍କୁ ରୁସ୍ତମ୍ ଆଦେଶ ଦେଲେ, ''ସମ୍ରାଟ୍ କାଇକାଉସ୍ କୋଉଠି ବନ୍ଦୀ ଅଛନ୍ତି, କହ। ମୋତେ ସେଇଠିକି ନେଇଚାଲ। ନଚେତ୍ ତୁମର ମୁଣ୍ଡ କାଟ ହେବ।''

ଔଲାଦ୍ ପାରସ୍ୟବୀରଙ୍କୁ ନେଇଗଲେ ସେଇ ଜାଗାକୁ; ଯେଉଁଠି କିଛି ଦିନ ଆଗରୁ ଲଢ଼େଇ ହେଇଥିଲା ପାରସ୍ୟ ଓ ମାଜାନ୍‌ଡେରାନ୍ ଭିତରେ। ସେଠି ରାକ୍ଷସ ସେନାପତି ଓ ତାହାର ପାଇକମାନେ ଡେରା ପକାଇ ରହିଥାଆନ୍ତି। ରୁସ୍ତମ୍ ସେଠି ପହଞ୍ଚିଲେ। କହିଲେ, ''ତମ ଦଳର ସେନାପତିଙ୍କ ସହ ମୁଁ ଲଢ଼ିବାକୁ ଚାହେଁ।''

ରାକ୍ଷସ ସେନାପତି ରାଜିହେଲେ। ଉଭୟଙ୍କ ଭିତରେ ଲଢ଼େଇ ହେଲା। ରାକ୍ଷସ ସେନାପତି ମଲେ। ଭୟଙ୍କର ରୂପର ସେଇ ସେଇ ରାକ୍ଷସ ସୈନ୍ୟମାନେ ଯେ ଯୁଆଡ଼େ ପଳାଇଗଲେ।

ରୁସ୍ତମ୍ ଖୁସିରେ ସହରର ସିଂହଦରଜାବାଟେ ଭିତରକୁ ପଶିଲେ। ରାକୁଶ୍ ଆନନ୍ଦରେ ବୋବାଉଥାଏ। ତା' ମାଲିକଙ୍କ ବଳ, କୌଶଳ ଆଉ ସାହସ ଦେଖି ସେ ଖୁବ୍ ଖୁସି। ତା' ବୋବାଳିରେ ସେ ରାକ୍ଷସ-ନଗର ଥରିଉଠିଲା। କାଇକାଉସ୍ ଏବଂ ତାଙ୍କ ସାଙ୍ଗରେ ବନ୍ଦୀଥିବା

ପାରସ୍ୟର ଲୋକେ, ଏ ଶବ୍ଦ ଶୁଣିପାରିଲେ। ସେମାନେ ଜାଣିଗଲେ ଯେ, ମହାବୀର ରୁସ୍ତମ୍ ସେଠି ହାଜର ହୋଇଗଲେଣି; ସେ ନିଶ୍ଚୟ ସେମାନଙ୍କୁ ରକ୍ଷା କରିବେ। ମାତ୍ର ସେ କିପରି ଜାଣିବେ; ଏମାନେ ଯେ ମାଟିତଳେ ଗୁପ୍ତ କୋଠରିରେ ବନ୍ଦୀ ଅଛନ୍ତି। ସେମାନେ ସମସ୍ତେ ମିଶି ଖୁବ୍ ଜୋର୍‌ରେ ପାଟିକଲେ – କାଳେ ସେମାନଙ୍କ ପାଟି ରୁସ୍ତମ୍‌ଙ୍କ କାନରେ ବାଜିଯିବ।

ଏଣେ ରୁସ୍ତମ୍ ପହଞ୍ଚିଗଲା ପରେ, ସେ ସହରରେ ସବୁ ଜିନିଷ ଓଲଟିଗଲା। ସହରର ଲୋକମାନେ ଆଉ ରୁସ୍ତମ୍‌ଙ୍କ ବିରୁଦ୍ଧରେ ପାଟି ଫିଟାଇଲେନି। ଅଙ୍ଗୁଳି ଉଠାଇଲେନି। ସେମାନେ ବେଶ୍ ଡରିଯାଇଥିଲେ। ଏଇ ମହାବୀର ସଙ୍ଗେ ଲଢ଼ିବା କାହିଁକି? କ'ଣ ଜୀବନ ପିତା ଲାଗୁଛି! ଏହା ଭାବି ସେମାନେ ଯୁଦ୍ଧ କଲେନି। ଅପରପକ୍ଷରେ, ସେମାନେ ରୁସ୍ତମ୍‌ଙ୍କୁ ସାହାଯ୍ୟ କଲେ। ଯୋଉଠି ପାରସ୍ୟ ସମ୍ରାଟ୍‌ଙ୍କୁ ବାନ୍ଧି ରଖାଯାଇଥିଲା, ସେଇ ଜାଗାକୁ ତାହାଙ୍କୁ ସେମାନେ ବାଟ କଢ଼ାଇନେଲେ। ସେମାନେ ସେ ବନ୍ଦିଘରର କାନ୍ଥସବୁ ଭାଙ୍ଗିବାରେ ସାହାଯ୍ୟ କଲେ।

ରୁସ୍ତମ୍ ସମ୍ରାଟ୍ ଓ ଲୋକମାନଙ୍କୁ ଉଦ୍ଧାର କଲେ। ସେ ସମସ୍ତେ ରୁସ୍ତମ୍‌ଙ୍କୁ ଘେରିଗଲେ। ଆନନ୍ଦରେ ପାଟିକଲେ। ରୁସ୍ତମ୍ ଦେଖିଲେ ରାଜାଙ୍କ ସହିତ ସବୁ ପାରସିକ ବନ୍ଦୀ ଅନ୍ଧ ହୋଇଯାଇଛନ୍ତି। ସେ ନିର୍ବାକ୍ ହୋଇଗଲେ। ଜଣେ ଅନ୍ଧ ସମ୍ରାଟ୍ ପାରସ୍ୟର ସିଂହାସନରେ ବସିବେ! ସେ ପୁଣି ଏତେ ବଡ଼ ଦେଶ ପାଳିବେ! ତାଙ୍କ ବୁକୁରେ ଗୋଟାଏ କରୁଣ ମୂର୍ଚ୍ଛନା ବାଜିଉଠିଲା।

ଏଇ ସମୟରେ ସମ୍ରାଟ୍ କାଇକାଉସ୍ ମୁହଁ ଖୋଲିଲେ – "ହେ ରୁସ୍ତମ୍, ହେ ବିଶ୍ୱବିଜୟୀ ବୀର, ତମେ ପାରସ୍ୟର ସମସ୍ତ ଗର୍ବର ଅଧିକାରୀ। ତମେ ଆମର ଜୀବନ ରକ୍ଷାକରିଚ, ସେଥିପାଇଁ ଆମର ଧନ୍ୟବାଦ ଗ୍ରହଣ କର। ଦେଖୁଚ, ଆମେ ଅନ୍ଧ ହୋଇଯାଇଚୁ। ଆମର ଆଖିର ଶକ୍ତିକି ହରଣ କରି ନେଇଚି ଧଳାଦୈତ୍ୟ। ସିଏ ଏଲ୍‌ବର୍ଜର ଦାମାବେନ୍ଦ୍ ଗୁମ୍ଫାରେ ରହେ। ସେ ବଡ଼ ଭୟଙ୍କର ଜୀବଟାଏ। ମାତ୍ର ତୁମେ ଯେ ମହାବୀର ଜାହୋନ୍‌ଙ୍କ ନାତି, ଜାଲ୍‌ଙ୍କ ପୁଅ!

ତମର ସେଇ ମହାନ୍ ଶକ୍ତି ଅଛି । ତମେ ନିଶ୍ଚୟ ଆମକୁ ରକ୍ଷାକରିପାରିବ । ସେଇ ଧଳାଦୈତ୍ୟକୁ ମାରି ତା' ରକ୍ତରେ ଆମର ଆଖି ଧୋଇଦେଲେ ଆମେ ଫେରିପାଇବୁ ଆମର ଦୃଷ୍ଟିଶକ୍ତି ! ଏତକ ସେବା ଆମର କର ରୁସ୍ତମ୍... ମହାବୀର !''

ସମ୍ରାଟ୍ ଏପରି କହିବାରୁ ପାରସ୍ୟର ସେଇ ବନ୍ଦୀମାନେ ଏକସ୍ୱରରେ କହିଲେ, ''ଆମର ରକ୍ଷାକର୍ତ୍ତା, ମହାବୀର ରୁସ୍ତମ୍... ଆମର ଦୃଷ୍ଟିଶକ୍ତି ଫେରାଇଆଣନ୍ତୁ ।''

ରୁସ୍ତମ୍ ଏକଥା ଶୁଣିବା ସଙ୍ଗେ ସଙ୍ଗେ ସମ୍ରାଟ୍‌ଙ୍କୁ ସଲାମ୍ ଜଣାଇ ଘୋଡ଼ାରେ ଚଢ଼ିଲେ । ରାକୁଶ୍ ଜୋର୍‌ରେ କଦମ୍ ପକାଇ ଚାଲିଲା । ସେମାନେ ଚାଲିଲେ ଏଲ୍‌ବର୍ଜ ଆଡ଼କୁ । ଏଲ୍‌ବର୍ଜର ସେଇ ଭୟଙ୍କର ଦାମାବେନ୍ଦ୍ ଗୁମ୍ଫାରେ ଲୁଚିଚି ଧଳାଦୈତ୍ୟ ଓ ତାହାର ସାଙ୍ଗସାଥୀମାନେ ।

ଅନେକ ଦୁଃଖ କଷ୍ଟ ଭିତରେ ରୁସ୍ତମ୍ ଏଲ୍‌ବର୍ଜରେ ପହଞ୍ଚିଲେ । ତା'ପରେ ଖୋଜିଲେ ସେ ଅନ୍ଧାରିଆ ଗୁହାକୁ । ପାଇଲେ ବି । ଏଇ ଗୁହାଟି ଲମ୍ବିଯାଇଚି ଦାମାବେନ୍ଦ୍ ଆଗ୍ନେୟଗିରିର ପେଟଭିତରକୁ ।

ଏ ଗୁହାରେ ଖାଲି ଭୟଙ୍କର ଦୈତ୍ୟମାନେ ରହିଥାନ୍ତି । ନାନାରୂପ, ନାନାଭେକ ସେମାନଙ୍କର । ବୀର ରୁସ୍ତମ୍ ସେ ଗୁହାଭିତରେ ପଶିଗଲେ । ତାଙ୍କ ସହିତ ଲଢ଼ିବାକୁ ଦୈତ୍ୟମାନେ ମାଡ଼ିଆସିଲେ । ଖୁବ୍ ଲଢ଼େଇ ହେଲା । ରୁସ୍ତମ୍ ଏମିତିଭାବରେ ଖଣ୍ଡା ଚଳାଇଲେ ଯେ ଦୈତ୍ୟମାନେ ଛିନିଛତ୍ର ହେଇଗଲେ । ଅନେକ ମଲେ । ଆଉ ଯୋଉମାନେ ଖଣ୍ଡିଆ ଖାବରା ହେଲେ, ସେମାନେ ପ୍ରାଣବିକଳରେ କୁଆଡ଼େ ନାଇଁ କୁଆଡ଼େ ପଳାଇଗଲେ । ଏମାନଙ୍କର ଅବସ୍ଥା ଦେଖି ଅନ୍ୟ ଦୈତ୍ୟମାନେ ବହୁତ ଦୂରରୁ ବାଟ କାଟି ପଳାଇଲେ ।

ରୁସ୍ତମ୍ ଏମିତି ଲଢ଼ି ଲଢ଼ି ସେ ଗୁହାର ଶେଷଭାଗକୁ ଆସିଲେ । ଏଠି ଅନ୍ଧାର କଟକଟ ଗୋଟାଏ ବଡ଼ ଗାତ ଦେଖିଲେ । କେତେ ଗହୀର ଏ ଗାତଟା, କିଏ କହିବ ! ପହିଲେ ସିଏ ବିଶେଷ କିଛି ଦେଖିପାରୁ ନଥିଲେ । କ୍ରମେ ଆଖି ତାଙ୍କର ଅନ୍ଧାର ଭିତରେ ଦେଖିବାରେ ଅଭ୍ୟସ୍ତ ହେଇଗଲା । ସେ ଏବେ ଅନେକ ଜିନିଷ ପରିଷ୍କାର ଭାବରେ ଦେଖିପାରିଲେ । ସେ ଦେଖିଲେ, ସେଇ ଗହ୍ୱର ଭିତରେ ଶୋଇଚି

ଗୋଟାଏ ବିରାଟ ଦୈତ୍ୟ। ଦିହଟା ତା'ର ଧଳାଲୋମରେ ଭରା। ସେ ଖୁବ୍ ନିଦରେ ଶୋଇଥାଏ; ତା' ନହେଲେ ଏତେ ହାଣକାଟ, ପାଟିଗୋଳରେ ତ ସିଏ ଉଠିପାରିଥାଆନ୍ତା !

ରୁସ୍ତମ୍ ତାକୁ ଲକ୍ଷ୍ୟକଲେ। ଓଃ ! ଶେଷକୁ ମିଳିଚି ସେ ଧଳାଦୈତ୍ୟ ! ଏହାରି ସହିତ ତାଙ୍କର ଆଜି ଲଢ଼େଇ ହେବ। ଏହାର ମରଣରେ ପାରସ୍ୟର ସମ୍ରାଟ୍ ଓ ସୈନ୍ୟମାନେ ଦୃଷ୍ଟିଶକ୍ତି ଫେରିପାଇବେ। ରୁସ୍ତମ୍‌ଙ୍କ ମନଟା ଲଢ଼େଇ କରିବାକୁ ହେଣ୍ଡାଳ ମାରିଲା। ସେ ତାଙ୍କର ପିତ୍ତଳ ଢାଲ ଉପରେ ଖଣ୍ଡାକୁ ପିଟିଲେ। ସେ ଶବ୍ଦରେ ଗୁହାଟା ଶବ୍ଦାୟିତ ହେଇଗଲା। ସେ ପାଟିକରି ଉଠିଲେ, ''ଆରେ ଆରେ ଦୈତ୍ୟ, ଶୋଇଚୁ କଅଣ ! ଉଠ, ଉଠ, ଏଇ ତୋ'ର ମୃତ୍ୟୁ ଆସିଯାଇଚି।''

ଦୈତ୍ୟଟା ଉଠିପଡ଼ିଲା। ତା' ହାତରେ ସେ ଧରିଥାଏ ଗୋଟାଏ ବିରାଟ ଚକିପଥର। ସେ କହିଲା, ''କିଏ ରେ ତୁ ? କୋଉଠୁ ଆସିଚୁ ? ଯମର ଗୁହାରେ ପଶିଚୁ କିଆଁ ? ଏଠୁ ତୁ ଫେରିପାରିବୁନି। ଏଇ ତୋ'ର ଶେଷ। ତୁ ନିହାତି ବୋକାଟିଏ ହେଇଥିବୁ— ନହେଲେ, ନିଜେ ନିଜେ କିଏ ମୃତ୍ୟୁକୁ ଡାକିଆଣେ।''

ରୁସ୍ତମ୍ କହିଲେ, ''ଶୁଣିବାକୁ ଚାହୁଁ ଦୈତ୍ୟ କିଏ ମୁହିଁ ? ବୋଧହୁଏ ତା' ଆଗରୁ ଭଲହେବ କହିଦେବା ମୋ' ପୂର୍ବପୁରୁଷଙ୍କ ନାମ। ଶୁଣିଚୁ ଜାହୋନ୍‌ଙ୍କ ନାମ ? ରାକ୍ଷସବଂଶକୁ ସିଏ କରିଲେ ନିର୍ମୂଳ !''

ଏ କଥାଟି ଶୁଣି ସେ ଧଳାଦୈତ୍ୟ ଶିହରି ଉଠିଲା। ସେ ଦୁଇ ଚାରି ପାଦ ପଛକୁ ଘୁଞ୍ଚିଗଲା। ତା' ପାଟିରୁ ତା' ଅଜଣାରେ ଗୋଟାଏ ଅସ୍ପଷ୍ଟ ଚିତ୍କାର ବାହାରି ଆସିଲା। ସେ ପଚାରିଲା, ''ଜାହୋନ୍ ଆଉ ନାହାଁ...।''

''ହା... ହା...! ଜାହୋନ୍ ନାହାନ୍ତି। ସେ ମୋ'ର ଜେଜେ ! ମୁଁ ତାଙ୍କର ନାତି। ଆଉ ମନେରଖ— ବୀର ଜାହୋନ୍‌ଙ୍କଠାରୁ ମୁଁ କୌଣସି ଗୁଣରେ କମ୍ ନୁହେଁ।''

ଦୈତ୍ୟର ଆଉ ଧୈର୍ଯ୍ୟ ନ ଥାଏ। ସେ ସେଇ ବିରାଟ ପଥରଟା ଦେଲା ଫିଙ୍ଗି। ସେ ପଥରଟା ରୁସ୍ତମ୍‌ଙ୍କ ଦିହରେ ବାଜିଲାନି— ରୁସ୍ତମ୍ ନିଜକୁ ବଞ୍ଚାଇନେଲେ। ତା'ପରେ ଦିହେଁ ଦିହିଁକୁ ଆକ୍ରମଣ କଲେ।

ଲୋକେ କହନ୍ତି, ଏ ପ୍ରକାର ଭୟଙ୍କର ଯୁଦ୍ଧ ଖାଲି ପାରସ୍ୟ ଇତିହାସ କିଆଁ, ପୃଥିବୀରେ ଅନ୍ୟ କୋଉଠି ହୋଇଥିବ କି ନାହିଁ ସନ୍ଦେହ।

କେହି କାହାକୁ କମ୍ ନୁହନ୍ତି। ଜଣେ ମଣିଷ, ଆଉ ଜଣେ ଦୈତ୍ୟ। କେତେବେଳେ ରୁସ୍ତମ୍ ଜିଣିଲାପରି ମନେହେଉଚି, ପୁଣି କେତେବେଳେ ଦୈତ୍ୟ ଜିଣିବାର ଭୟ ରହୁଚି। ଉଭୟଙ୍କ ଦିହରେ ଅନେକ କ୍ଷତ। କିଏ କେତେବେଳେ ମରିବ କି ଉଭୟେ ମରିଯିବେ, ଏପରି ଅନେକ କଥା ମନକୁ ଆସୁଥାଏ।

ଅନେକ ସମୟ ଧରି ଏ କ୍ଳାନ୍ତିକର ଲଢ଼େଇ ଚାଲିଲା। ରୁସ୍ତମ୍ ଏକପ୍ରକାର ବିରକ୍ତ ହୋଇପଡ଼ିଲେ। ଭାବୁଥିଲେ ଆଉ ଅଧିକ କାଳ ଏ ଯୁଦ୍ଧ ଚଳାଇବେ ନାହିଁ– ଯୁଦ୍ଧ ଛାଡ଼ିଦେବେ। ଠିକ୍ ଏଇ ସମୟରେ ତାଙ୍କ ଦିହରେ ଗୋଟେ ଅଦ୍ଭୁତ ଶକ୍ତିର ସୁଅ ବହିଗଲା। ରୁସ୍ତମ୍ ଏ ଶକ୍ତିରେ ବଳୀ ହୋଇଉଠିଲେ। ସେ ଧଳାଦୈତ୍ୟକୁ ମୋଡ଼ିଦେଲେ, ତା'ପରେ ତାକୁ ଜୋର୍‌ରେ ଦେଲେ ଫିଙ୍ଗି। ସେ ବାଜିଲା ଯାଇ ଗୁହାର ପଥର ଛାତରେ। ଜୀବନ ତା'ର ବାହାରିଗଲା। ମରିବାବେଳକୁ ସେ ଗୋଟାଏ ଭୀଷଣ ଚିତ୍କାର କଲା। ତା' ଚିତ୍କାରରେ ଗୁମ୍ଫାଟି ଫାଟିଲାପରି ମନେହେଲା।

ଦେବତାମାନଙ୍କୁ ଅଜସ୍ର ଧନ୍ୟବାଦ ଜଣାଇଲେ ରୁସ୍ତମ୍। ସେ ସେମାନଙ୍କୁ ଜଣାଇଲେ ହୃଦୟର ପ୍ରଣାମ। ତା'ପରେ ମୁଣ୍ଡର ଟୋପିରେ ସଂଗ୍ରହକଲେ ଧଳାଦୈତ୍ୟର ରକ୍ତ।

ସେ ଫେରିଆସିଲେ ସେଇ ଜାଗାକୁ ଯୋଉଠି ଅନ୍ଧ କାଇକାଉସ୍ ଏବଂ ପାରସ୍ୟର ଅନ୍ୟ ବୀରମାନେ ଅପେକ୍ଷା କରି ରହିଥିଲେ। ଏ ରକ୍ତରେ ସେମାନଙ୍କ ଆଖି ଧୋଇଦିଆଗଲା। ସେମାନେ ଫେରିପାଇଲେ ସେମାନଙ୍କ ଦୃଷ୍ଟିଶକ୍ତି।

କାଇକାଉସ୍ ଆଉ ତାଙ୍କର ବନ୍ଧୁମାନେ ଫେରିଆସିବାକୁ ଭାବୁଥିଲେ। ମାଜାନଡେରାନ୍‌ର ରାଜା ଏମାନଙ୍କୁ ସହଜେ ଛାଡ଼ିଲେ ନାହିଁ। କେଡ଼େ କଷ୍ଟରେ ଏମାନଙ୍କୁ ବନ୍ଦୀ କରାଯାଇଥିଲା– ଆଜି ଏମାନେ ଏଡ଼େ ସହଜରେ ଚାଲିଯିବେ! ସେ ତାଙ୍କର ଯୁଦ୍ଧ ଚଳାଇଲେ। ଦୁଇପକ୍ଷ ଭିତରେ ଭୀଷଣ ଲଢ଼େଇ ପୁଣି ହେଲା। ଏଥିରେ କାହାରି ଜିତାପଟ

ହେଲାପରି ମନେହେଉନଥାଏ ।

ରୁସ୍ତମ୍ ଭାବିଲେ, ମାଜାନ୍‌ଡେରାନ୍‌ର ରାଜାଙ୍କ ସହିତ ସିଏ ଏକାକୀ ଲଢ଼ିବେ । ରାଜା ହାରିଗଲେ, ତାଙ୍କ ସୈନ୍ୟମାନେ ବି ହାରିବେ – ଏମିତି ଗୋଟାଏ ଗୋଳଯୁଦ୍ଧ କିଆଁ !

ସେ ମାଜାନ୍‌ଡେରାନ୍‌ର ରାଜାଙ୍କୁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ଡାକରା ଦେଲେ । ଉଭୟଙ୍କ ଭିତରେ ଗୋଟାଏ ନାହିଁ-ନଥିବା ଯୁଦ୍ଧ ଚାଲିଲା । ରାଜା ବହୁତ କିମିଆଁ ଚଳାଇଲେ । ରୁସ୍ତମ୍ ସେ କିମିଆଁକୁ ନିଜର ବାହୁବଳରେ କୁଆଡ଼େ ଉଡ଼େଇଦେଲେ । ରୁସ୍ତମ୍ ତାଙ୍କର ତଲୁଆରକୁ ଠିକ୍ ମାଜାନ୍‌ଡେରାନ୍ ରାଜାଙ୍କ ଦିହରେ ଭୁଷିବାକୁ ଯାଉଥାନ୍ତି – ରାଜା ଗୋଟିଏ ବଡ଼ ପଥର ହୋଇଗଲେ । ପଥର ଦିହରେ କିଏ ତଲୁଆର ଭୁଷେ ! ରୁସ୍ତମ୍ ଟେକିଧରିଲେ ସେ ପଥରକୁ । କହିଲେ, "ହେ ସମ୍ରାଟ୍, ବେଗି ମଣିଷରୂପ ହୁଅ, ନହେଲେ ଏ ପଥରକୁ ମୁଁ ଏମିତି କଚାଡ଼ିଦେବି ଯେ, ହଜାର ହଜାର ଖଣ୍ଡ ହୋଇଯିବ ।"

ସମ୍ରାଟ୍ ମାଜାନ୍‌ଡେରାନ୍ ନିଜ ରୂପ ନେଲେ । ବନ୍ଦୀକଲେ ତାହାଙ୍କୁ ରୁସ୍ତମ୍ । ବନ୍ଦୀ ସମ୍ରାଟ୍‌ଙ୍କୁ ସେ ନେଇ ଭେଟିଦେଲେ ସମ୍ରାଟ୍ କାଇକାଉସ୍‌ଙ୍କୁ । କାଇକାଉସ୍ ଏହାଙ୍କୁ କ୍ଷମାଦେଲେନି । ସେ ତାହାଙ୍କୁ ନାଶୀର ଆଦେଶଦେଲେ ।

କାଇକାଉସ୍, ତାଙ୍କର ସେନା ଓ ରୁସ୍ତମ୍ ଏ ସମସ୍ତେ ମାଜାନ୍-ଡେରାନ୍‌ରୁ ଅନେକ ଧନରତ୍ନ ଧରି ପାରସ୍ୟକୁ ଫେରିଆସିଲେ ।

## ରୁସ୍ତମ୍ ଓ ଶୋରାବ୍

ଥରେ ରୁସ୍ତମ୍ ଯାଇଥାନ୍ତି ଶିକାରକୁ । ବଣରେ ବୁଲି ବୁଲି ସେ ଅନେକ ଦୂର ଚାଲିଗଲେ । ପହଞ୍ଚିଲେ ଗୋଟିଏ ମୁଲକରେ । ସେ ମୁଲକର ନାଁ ସାମେଙ୍ଗାନ୍ ।

ଶିକାର କରିବାର ଶ୍ରମରେ ରୁସ୍ତମ୍ କ୍ଳାନ୍ତ ହେଇଯାଇଥାନ୍ତି । ଆକାଶର

ମଝିରେ ଥାଏ ସୂର୍ଯ୍ୟ। ବଡ଼ ଟାଣ ଖରା ହେଉଥାଏ। ସେ କିଛି ଖିଆପିଆ କଲେ। ତା'ପରେ ବିଶ୍ରାମ ନେଲେ। ବିଶ୍ରାମ ନେଉ ନେଉ ଶୋଇପଡ଼ିଲେ।

ରୁସ୍ତମ୍ ଶୋଇଥିଲାବେଳେ ତାଙ୍କର ପ୍ରିୟ ଘୋଡ଼ାଟିକୁ କିଏ ହରଣଚାଳ କରିନେଲା। ସେ ଉଠିଲେ। ଦେଖିଲେ ରାକୁଶ୍ ନାହିଁ। ବିସ୍ମିତ ହେଲେ। ଭାବିଲେ, 'ରାକୁଶ୍ ଖୁବ୍ ଚାଲାଖ ଘୋଡ଼ା। ପୁଣି ଏତେ ବଳବାନ୍ ଯେ ତାକୁ ଆୟତ୍ତ କରିବା ଲୋକ ସଂସାରରେ ନାହାନ୍ତି, କହିଲେ ଚଳେ। ଏପରି ଘୋଡ଼ାକୁ ନେଲା କିଏ! ନିଜେ ତ ସିଏ କୁଆଡ଼େ ଯାଇ ନଥିବ?' ସିଏ ପୁଣି ରୁସ୍ତମ୍‌ଙ୍କ ଘୋଡ଼ା! ରୁସ୍ତମ୍‌ଙ୍କ ନାଁ ଶୁଣିଲେ, ଦୁଷ୍ଟଲୋକମାନଙ୍କ ଛାତି ଥରେ– ଅଥଚ ତାଙ୍କରି ଘୋଡ଼ାକୁ କିଏ କୁଆଡ଼େ ନେଇଗଲା! ସେ ପାଖଆଖରେ ଖୋଜାଖୋଜି କଲେ। ଯାହାକୁ ଦେଖିଲେ, ଘୋଡ଼ା ବିଷୟରେ ପଚାରିଲେ। କେହି କିଛି ଖବର ଦେଇପାରିଲେନି। ବ୍ୟସ୍ତ ହେଇଗଲେ।

ରୁସ୍ତମ୍‌ଙ୍କ ରାଗର ସୀମା ରହିଲାନି। ସେ ସେହି ଦେଶର ରାଜାଙ୍କୁ ଭେଟିଲେ ଓ ତାହାଙ୍କୁ ଜଣାଇଲେ ଘୋଡ଼ାଚୋରିର କଥା। ସେ ରାଜା ରୁସ୍ତମ୍‌ଙ୍କୁ ବହୁ ଆଦର କଲେ ଓ ବେଶ୍ ସମ୍ମାନ ଦେଖାଇଲେ। ତାହାଙ୍କୁ ରାଜଉଆସର ଅତିଥି କରି ରଖିଲେ। ରାଜା ଅନେକ ଲୋକଙ୍କୁ ଲଗାଇଦେଲେ ଘୋଡ଼ା ଖୋଜିବା ପାଇଁ।

ରୁସ୍ତମ୍ ଥାଆନ୍ତି ରାଜବାଟୀରେ। ଗୋଟାଏ ସୁସଜ୍ଜିତ କୋଠରିରେ ରହୁଥାଆନ୍ତି ସେ। ହଠାତ୍ ପରଦା ସେ ପାରକୁ ରୁସ୍ତମ୍‌ଙ୍କ ନଜର ଗଲା। ସେଠି ସେ ଗୋଟିଏ ମନୋହର ଦୃଶ୍ୟ ଦେଖିଲେ– ଜଣେ ଖୁବ୍ ସୁନ୍ଦରୀ ଝିଅ। ସେ ଝିଅର ସେବା କରୁଥାଆନ୍ତି କେତେଜଣ ଦାସୀ। ସେ ଝିଅଟି ଆସିଲା, ଦେଖାକଲା ରୁସ୍ତମ୍‌ଙ୍କୁ।

ରୁସ୍ତମ୍ ଏ ଝିଅଟିକି ଦେଖି ଆନନ୍ଦରେ ଅଭିଭୂତ ହୋଇଗଲେ। ସେ କହିଲେ, ''କିଏ ତମେ? ଏଠାରେ କ'ଣ ବନ୍ଦିନୀ ହେଇ ରହିଚ କି? ନା, ମୋତେ କୌଣସି ସାହସିକ କାମ କରିବାକୁ ଆଦେଶ ଦେଉଚ?''

ସେ ଝିଅଟି ରୁସ୍ତମ୍‌ଙ୍କୁ ନମ୍ର ପ୍ରଣତି ଜଣାଇଲା। ତା'ପରେ

କହିଲା, "ମହାବୀର, ମୁଁ ରାଜକୁମାରୀ ତାମିନେ। ଆପଣଙ୍କ ବୀରତ୍ୱ ଓ ସାହସ କଥା ଅନେକ ଥର ମୁଁ ଶୁଣିଚି। ଶୁଣି ମନେ ମନେ ଆପଣଙ୍କୁ ଦେଖିବାକୁ ଇଚ୍ଛା କରିଚି। ସେଇପରି କୌଣସି ଗୋଟେ ସୁବିଧା ମୁଁ ଖୋଜୁଥିଲି। ଆଜି ସେ ସୁବିଧା ପାଇଲି। ଆପଣ ଜାଣି ନଥିବେ...!"

—"କଅଣ ରାଜକୁମାରୀ?"

—"ଆପଣଙ୍କ ଘୋଡ଼ାକୁ ଅପହରଣ କରି ଆଣିଚି ମୁଁ। ତା' ନ କରିଥିଲେ, ଆପଣ ଏଠାକୁ ଆସିଥାଆନ୍ତେ କାହିଁକି?"

—"ଆଚ୍ଛା, ଖୁବ୍ କୌଶଳୀ ଦେଖୁଚି!"

—"ମୁଁ ଆପଣଙ୍କୁ ଏଠି ଅତିଥିଭାବେ ପାଇ ଖୁବ୍ ଖୁସି। ଆପଣଙ୍କ ସେବା କରିବି। ତା'ଛଡ଼ା ମୋର ଗୋଟିଏ ମାଗୁଣି...!"

—"ରାଜକୁମାରୀ ନିର୍ଭୟରେ କହିପାରନ୍ତି!"

—"ଅନୁମତି ଦେବେ କି...?" ରାଜକୁମାରୀଙ୍କ ମୁହଁ ଲାଲ୍ ପଡ଼ିଗଲା। ସେ କ'ଣ କହିବାକୁ ଯାଇ କହିପାରିଲେ ନାହିଁ।

—"କି କଥା?"

—"ସାରାଜୀବନ ଆପଣଙ୍କ ଜୀବନସଙ୍ଗିନୀ ହେଇ..."

—"ଏ ତ ମୋର ବଡ଼ ଭାଗ୍ୟ... ରାଜକୁମାରୀ!"

—"ସେ ଭାଗ୍ୟ ମୋର!"

ଉଭୟଙ୍କ କଥାଭାଷା ଏମିତି ଭାବରେ ଶେଷହେଲା। ରାଜକୁମାରୀ ଅନ୍ତଃପୁରକୁ ଫେରିଗଲେ। ସାମେଙ୍ଗାନ୍‌ର ରାଜା ନିଜେ ଅତିଥିଙ୍କ ଭଲମନ୍ଦ ଦେଖିବାକୁ ଆସିଲେ। ଆଉ ସେ ବି ଏ ପ୍ରସଙ୍ଗ ଉଠାଇଲେ।

ରୁସ୍ତମ୍ ଯା' ଆଗରୁ ବିବାହ କଥା ନେଇ ମୁହୂର୍ତ୍ତେ ବି ଭାବି ନଥିଲେ। ସେ ଚାହିଁଥିଲେ, ଏମିତି ଲଢ଼େଇ କରି ଜୀବନ କାଟିଦେବେ। ମାତ୍ର ତାମିନେଙ୍କୁ ଦେଖିଲା ପରେ, ତାଙ୍କ ସହ କଥାଭାଷା ହେଲା ପରେ ଆଉ ଶେଷକୁ ରାଜାଙ୍କ ସହ ଆଲୋଚନାରେ ସେ ଏ ବିବାହ ପାଇଁ ରାଜିହେଲେ।

ତା' ପରଦିନ ରୁସ୍ତମ୍ ଆଉ ତାମିନେଙ୍କ ଭିତରେ ବିବାହ ହେଇଗଲା। ସାରା ଦେଶରେ ଆନନ୍ଦ ଉତ୍ସବ। ସ୍ତ୍ରୀ-ପୁରୁଷ, ପିଲାଛୁଆ ସବୁରି

ମୁହଁରେ ହସ। ସବୁରି ବୁକୁରେ ଆନନ୍ଦ। ସବୁଘରେ ଉତ୍ସବ! ଏଇପରି ଆନନ୍ଦ ଉତ୍ସବ ଅନେକ ଦିନଧରି ସାରା ମୂଲକରେ ଲାଗିରହିଲା।

ଏଇ ଆନନ୍ଦ ଭିତରେ ଦିନେ ହଠାତ୍ ଖବର ଆସି ପହଞ୍ଚିଲା, ଜାବୁଲିସ୍ଥାନରେ ପୁଣି ଗୋଳମାଳ ଲାଗିଛି– ଦୈତ୍ୟମାନେ ଦେଶ ଆକ୍ରମଣ କରିଛନ୍ତି। ତାଙ୍କ ବାବା ଜାଲ୍ ଶତ୍ରୁମାନଙ୍କ ସଙ୍ଗେ ଲଢ଼େଇ ଚଳାଇଛନ୍ତି।

ରୁସ୍ତମ୍‌ଙ୍କ ମନଟା ଖରାପ ହୋଇଗଲା। ସେ ତାମିନେଙ୍କୁ ଛାଡ଼ି ଏତେ ବେଗି ଫେରିଯିବାକୁ ଚାହୁଁନଥିଲେ। ମାତ୍ର ବାବା ବିପଦରେ ପଡ଼ିଛନ୍ତି। ସିଏ ଏଠାରେ ସୁଖ-ସୁବିଧାରେ ରହିବେ କେମିତି! ବାବାଙ୍କୁ ସାହାଯ୍ୟ କରିବା ତାଙ୍କର ସବୁଠୁ ବଡ଼ କର୍ତ୍ତବ୍ୟ। ସେ ସ୍ଥିର କଲେ– ଖୁବ୍ ଶୀଘ୍ର ସେ ଜାବୁଲିସ୍ଥାନ୍ ଫେରିଯିବେ।

ରୁସ୍ତମ୍ ଏ କଥା ରାଜାଙ୍କୁ ଏବଂ ତାମିନେଙ୍କୁ କହିଲେ। ତାମିନେ ଦୁଃଖ କଲେ; ମାତ୍ର ସ୍ୱାମୀଙ୍କି ଅଟକାଇଲେନି। ହସିହସି ମେଲାଣି ଦେଲେ। ଖାଲି କହିଲେ, ତାଙ୍କୁ ଯେମିତି ବୀର ରୁସ୍ତମ୍ ଭୁଲିନଯାଆନ୍ତି।

ଆଉ ରୁସ୍ତମ୍– ସେ କାଢ଼ିଲେ ଗୋଟିଏ ତାବିଜ୍। କହିଲେ, ''ତାମିନେ, ପୁଅ ହେଲେ ତା' ବାହୁରେ ଏ ତାବିଜ୍‌ଟି ବାନ୍ଧିଦେବ। ପୁଅଟିଏ ଲାଗି ଦେବତାଙ୍କୁ ପ୍ରାର୍ଥନା କରିବ!''

ତାମିନେଙ୍କଠୁଁ ମେଲାଣି ନେଇ ରୁସ୍ତମ୍ ଚାଲିଗଲେ ତାଙ୍କ ନିଜ ଦେଶକୁ। ତାମିନେଙ୍କ ମନରେ ଦୁଃଖର ମେଘ ଢାଙ୍କିଗଲା। ଏ ମେଲାଣିର ପରେ ତାଙ୍କର ପୁଅଟିଏ ହେଲା। ବେଶ୍ ସୁସ୍ଥ ସବଳ ସୁନ୍ଦର ଏ ଛୁଆ! ତାମିନେ ସବୁ ଦୁଃଖ ଭୁଲିଗଲେ। ସ୍ୱାମୀ ସିନା ଦୂରରେ; ତାଙ୍କର ସ୍ମୃତି ତ ଏ ପୁଅ! ପୁଅକୁ ଚାହିଁ ତାମିନେ ସବୁ ଦୁଃଖ ଭୁଲିଲେ। ଏ ପୁଅର ନାଁ ଦେଲେ ଶୋରାବ୍। ଆମ ଭାଷାରେ ଶୋରାବ୍‌ର ଅର୍ଥ ହୁଅନ୍ତା– ଯିଏ ହସୁଚି! ଛୁଆଟି ତାଙ୍କ ଦୁଃଖୀ ଜୀବନରେ ହସ ଆଣିଲା ନା– ସେଥିପାଇଁ ତା' ନାଁ ଏପରି ଦିଆଗଲା।

ତାମିନେ ପୁଅଟିକି ଏତେ ଭଲ ପାଉଥିଲେ ଯେ, ତା'ରି ପଛରେ ସବୁବେଳେ ଲାଗିଥାଆନ୍ତି। ଆଉ ସେ ଜାଣିଲେ, ଏ ପୁଅ ଠିକ୍ ରୁସ୍ତମ୍‌ଙ୍କ ପରି ହେବ। ରୁସ୍ତମ୍ କହୁଥିଲେ, ''ବୁଝିଲ ତାମିନେ, ଆମ

ପୁଅ ମୋ'ପରି ବୀର ହେବ। ତାକୁ ନେଇ ମୂଳରୁ ମୁଁ ସବୁ ଯୁଦ୍ଧକୌଶଳ ଶିଖାଇଦେବି। ସିଏ ମୋ'ଠୁ ବଡ଼ ବୀର ହେବ!''

ରୁସ୍ତମ୍‌ଙ୍କର ଏଇ କଥା... ତାମିନେଙ୍କ କାନରେ ବାରବାର ବାଜୁଥାଏ। ତା'ହେଲେ, ରୁସ୍ତମ୍ ନେଇଯିବେ ଶୋରାବ୍‌କୁ! ଶୋରାବ୍‌କୁ ଛାଡ଼ି ତାମିନେ ରହିବେ କେମିତି— ସିଏ ତ ପୁଅ ବିହୁନେ ମରିଯିବେ। ଏ ଟିକି ଛୁଆଟି ଠିକ୍ ତା' ବାପା ପରି ହସୁଛି। ତା' ବାପାର ଅନେକ ବ୍ୟବହାର ଏହାଠି ରୂପପାଇଚି। ସେ ଚାଲିଗଲେ, ତାମିନେଙ୍କ ଜୀବନଟା ଶୂନ୍ୟ ହେଇଯିବ। ସେ ଭାବିଲେ, ନା... ଶୋରାବ୍ ତାଙ୍କ ପାଖରେ ରହିବ। ତେଣୁ ସେ ସ୍ୱାମୀଙ୍କ ପାଖକୁ ଖବର ପଠାଇଲେ ଯେ ତାଙ୍କର ଝିଅଟିଏ ହେଇଛି।

ତେଣୁ ରୁସ୍ତମ୍ ଶୋରାବ୍‌ର ଜନ୍ମ ବିଷୟରେ କିଛି ଜାଣି ପାରିଲେ ନାହିଁ। ମାତ୍ର ଶୋରାବ୍ ବଢ଼ିଲା... ତା' ମାଆର ଯତ୍ନ ଆଉ ଆଦରରେ। ତାମିନେ ତାକୁ କହନ୍ତି ରୁସ୍ତମ୍‌ଙ୍କ ବୀରତ୍ୱ କାହାଣୀ। ଶୋରାବ୍‌ର ଛାତି ଗର୍ବରେ ଫୁଲିଉଠେ। ତା' ବୀର ପିତାର ରକ୍ତ ତା' ଧମନୀରେ ବହୁଛି। ସେ ଚଞ୍ଚଳ ହେଇଯାଏ।

ଶୋରାବ୍ ଅତି ଅଳ୍ପ ବୟସରେ ଯୁଦ୍ଧବିଦ୍ୟାରେ ପାରଙ୍ଗମ ହୋଇଗଲା। ତା' କାନରେ ରୁସ୍ତମ୍‌ଙ୍କର ବୀରତ୍ୱ କାହାଣୀ ବହୁତ ବାଜୁଥାଏ। ତା' ସହ ପାରସ୍ୟର ସେଇ ବୋକା ସମ୍ରାଟ୍ କାଇକାଉସ୍‌ର ବିଭିନ୍ନ ଗର୍ବ ଅଭିମାନର କଥା ବି ଶୁଣୁଥାଏ। ସେ ଭାବୁଥାଏ, ସେ ତା' ବାବାଙ୍କୁ ଖୋଜିଯିବ। ଦେଖାକରିବ ବୀର ରୁସ୍ତମ୍‌ଙ୍କୁ ଓ ମାଗିବ ତାଙ୍କର ଆଶୀର୍ବାଦ। ହୁଏତ ନିମନ୍ତ୍ରଣ କରିବ ତାହାଙ୍କୁ। ଏହା କରି ମାଆ ତାମିନେଙ୍କ ଆଖିରୁ ଲୁହଧାର ସେ ପୋଛିପାରିବ।

ମାଆଙ୍କୁ ଅନେକ ଥର ଏକଥା କହିଚି ଶୋରାବ୍। ତାମିନେ ବାରଣ କରନ୍ତି, ''ନା...ନା, ବାବା, ତୁ ଯାଆନି। କାଳେ ସେ ଚିହ୍ନିପାରିବେ ନାହିଁ; ହୁଏତ ତୋ'ର ଅପମାନ କରିପାରନ୍ତି।''

—''ନା ମା', ଜଗତ୍‌ବିଖ୍ୟାତ ରୁସ୍ତମ୍ ଏ ପ୍ରକାର ଭୁଲ କରି ପାରିବେନି।''

—''ତୁ ଯାଆନି ତ ବାବା! ଆମର ଛୋଟ ମୁଲକଟି। ଏଇଠି

ମୁଁ ଖୁସିରେ ଅଛି।''

—''ନା...ନା, ମୋ' ବାବା ତ ପାରସ୍ୟର ସମ୍ରାଟ୍ ହେବା ପାଇଁ ଯୋଗ୍ୟ। ସିଏ ହେବେନି କିଆଁ? ମୁଁ ପାରସ୍ୟ ଆକ୍ରମଣ କରିବି। ମୁଁ ସେ ସମ୍ରାଟ୍ କାଇକାଉସ୍‌କୁ ଯୁଦ୍ଧରେ ହଟାଇବି। ମୋ' ବାବାଙ୍କୁ ସିଂହାସନରେ ବସାଇବି।''

ତାମିନେଙ୍କ ମୁହଁ ଉଜ୍ଜ୍ୱଳ ହୋଇଉଠେ। ଆହା, ଏ ଛୋଟ ପିଲାଟି ମନରେ କି ଉଦାର ଭାବନା! କିନ୍ତୁ ତାମିନେ କ'ଣ କରିଛନ୍ତି? ସେ ରୁସ୍ତମ୍‌ଙ୍କୁ ଭୁଲ ଖବର ଦେଇଚ଼ନ୍ତି! ସ୍ୱାମୀ ଶୋରାବ୍‌ର ଜନ୍ମକଥା ଜାଣନ୍ତିନି। ସେ ଏହାକୁ ଚିହ୍ନିବେ କେମିତି? ତାଙ୍କ ମୁହଁ ଏଇ ଚିନ୍ତାରେ ମଳିଛିଆ ପଡ଼ିଯାଏ।

ମାତ୍ର ଶୋରାବ୍ ବୁଝିପାରେନି। ସେ ନିଠେଇ ନିଠେଇ ମାଆଙ୍କୁ ପଚାରେ, ତାଙ୍କ ମୁହଁ ମଳିନ ପଡ଼ିଗଲା କାହିଁକି? ମାଆ ଅନ୍ୟ କଥା କହି ବାଆଁରେଇ ଦିଅନ୍ତି।

ଏମିତି ଅବସ୍ଥାରେ ବାଳକ ଶୋରାବ୍ ଦିନେ ସତକୁ ସତ ତା' ଜେଜେଙ୍କୁ ମନର କଥା କହିଲା। ସେ ଦେଶର ସୈନ୍ୟମାନଙ୍କୁ କହିଲା। ଶୋରାବ୍‌କୁ ଭଲ ପାଆନ୍ତି ଗୋଟା ମୁଲକର ସମସ୍ତେ। ସୈନ୍ୟସାମନ୍ତଙ୍କ ସେ ମଥାମଣି। ସେମାନେ ଏ ବାଳୁତଟିକି ସେମାନଙ୍କ ନେତା ବୋଲି ମାନିନେଲେ।

ଏଣେ ତୁରାନ୍ ଆଉ ପାରସ୍ୟ ଭିତରେ ପଡୁନଥାଏ। ତୁରାନ୍ ସମ୍ରାଟ୍ ଆଫ୍ରାସିୟାବ୍ ଖାଲି ଟାକିବସିଥାଆନ୍ତି କେମିତି ପାରସ୍ୟ ଉପରେ ଦାଉ ସାଧିବେ। ଅତୀତର କଥା ମନେଥାଏ। ରୁସ୍ତମ୍‌ଙ୍କୁ କେମିତି ଉଚିତ୍ ଶିକ୍ଷା ଦିଆଯିବ ଆଉ କାଇକାଉସ୍‌କୁ କିପରି ସିଂହାସନରୁ ତଡ଼ାଯିବ, ଏଇ ତ ଥିଲା ତାଙ୍କର ବଡ଼ କଳ୍ପନା।

ଆଫ୍ରାସିୟାବ୍ ବଡ଼ କୁଚ଼କ୍ରୀ। ସେ ନିଶ୍ଚିତ ଭାବରେ ଜାଣୁଥିଲେ ଯେ, ରୁସ୍ତମ୍ ଯେମିତି ବୀର, ଶୋରାବ୍ ସେମିତି ବୀର। ଏ ଦୁଇଜଣଯାକ ଶତ୍ରୁ। ଏ ଦୁଇଜଣ ନଷ୍ଟ ହୋଇଯିବା ଉଚିତ। ଏ ଦୁହେଁ ତାଙ୍କ ପାଇଁ ବିପଦ। ପୁଣି ଏମାନଙ୍କୁ ମାରିବାକୁ ଆଉ କେହି ଲୋକ ନାହାଁ। ତେଣୁ ଏମାନେ ପରସ୍ପରକୁ ଆକ୍ରମଣ କରନ୍ତୁ, ପରସ୍ପରକୁ

ହତ୍ୟାକରନ୍ତୁ ! ଏହାଇ ଥିଲା ତାଙ୍କର ଇଚ୍ଛା ।

ସେ ତାଙ୍କର ସେନାପତିମାନଙ୍କୁ ନିର୍ଦ୍ଦେଶ ଦେଲେ, "ଦେଖ, ଶୋରାବ୍ ଯେମିତି ରୁସ୍ତମ୍‌ଙ୍କୁ ଚିହ୍ନିପାରିବେନି । ଆଉ ସେ ଦି' ଜଣଙ୍କ ଭିତରେ ଯେମିତି ଶତ୍ରୁତା ବଢ଼ିଉଠେ ।"

ବୀର ଶୋରାବ୍ ସେନାବାହିନୀର ସବୁଠୁ ଆଗରେ ଥାଆନ୍ତି । ସିଏ ଚାଲୁଥାଆନ୍ତି ଗୋଟାଏ ନିଆଁହୁଳାପରି । ତାଙ୍କର ରୂପ ଓ ବୀରତ୍ୱ ତୁରାନ୍ ଏବଂ ସାମେଙ୍ଗାନ୍‌ର ସୈନ୍ୟମାନଙ୍କ ଭିତରେ ଗୋଟାଏ ନିଆଁର ଲହରୀ ଖେଳାଇଦେଲା । ସେମାନେ ଯେ ପାରସ୍ୟ ଉପରେ ଚଢ଼ାଉ କରିବାକୁ ଆସୁଛନ୍ତି, ଏ ଖବର ପାଇଲେ ସମ୍ରାଟ୍ କାଇକାଉସ୍ । ଆହୁରି ବି ଶୁଣିଲେ ଯେ ଶୋରାବ୍ ବୋଲି ଜଣେ ବାଳକବୀର ଆସୁଚି; ଯାହାର ମୁକାବିଲା କରିବାଲାଗି ପାରସ୍ୟରେ କେହି ନାହାଁ । ସେତେବେଳକୁ ରୁସ୍ତମ ଥାଆନ୍ତି ଜାବୁଲିସ୍ଥାନରେ । କାଇକାଉସ୍ ଡରିଗଲେ । ସେ ସଙ୍ଗେ ସଙ୍ଗେ ଦୂତ ପଠାଇଲେ ରୁସ୍ତମ୍‌ଙ୍କ ପାଖକୁ । ସେ ଖବର ପଠାଇଲେ ଯେ ରୁସ୍ତମ୍ ତୁରନ୍ତ ନ ଆସିଲେ ପାରସ୍ୟର ସବୁ ଇଜ୍ଜତ ସରିଲା । ଯୋଉ ଦେଶର ସମ୍ମାନ ପାଇଁ ରୁସ୍ତମ୍ ଏତେ କଷ୍ଟ ସହିଛନ୍ତି, ସେଇ ଦେଶ ଆଜି ବିପଦରେ ।

କାଇକାଉସ୍‌ଙ୍କ ଖବର ପାଇ ରୁସ୍ତମ୍ ଶୀଘ୍ର ପାରସ୍ୟକୁ ଆସିଲେ । ଏବେ ସେ ବୁଢ଼ା ହେଇଗଲେଣି । ଯେତେବେଳେ ସେ ତରୁଣ ଥିଲେ, ସେ ସମୟରେ ସେ ଶିଳ୍‌କର ପୋଷାକ ପିନ୍ଧି ଯୁଦ୍ଧପଡ଼ିଆକୁ ଯାଉଥିଲେ; ଏବେ ସେ କଳାପୋଷାକ ପିନ୍ଧୁଚନ୍ତି ।

ସେ ପାରସ୍ୟ ସୈନ୍ୟ-ଶିବିରରେ ପହଞ୍ଚିଲେ । ତାଙ୍କୁ ସେନା ଆଗ୍ରହର ସହ ଚାହିଁରହିଥିଲା । ସେମାନଙ୍କ ଭିତରେ ନୂଆ ଜୀବନ, ନୂଆ ଉତ୍ସାହ ଖେଳିଗଲା । ରୁସ୍ତମ୍ ପଚାରୁଥିଲେ, କିଏ ସେଇ ବୀର, କେମିତି ତାହାର ରୂପଭେକ । ସବୁ ଶୁଣି ରୁସ୍ତମ୍‌ଙ୍କ ଛାତିଭିତରଟା କ'ଣ ନା କ'ଣ ହେଇଗଲା । ସେ ତାମିନେଙ୍କ କଥା ଭାବିବସିଲେ । ତାଙ୍କର ଝିଅଟିଏ ନହେଇ, ପୁଅଟିଏ ହେଇଥାଆନ୍ତା କି ! ସେ ଠିକ୍ ଏହି ବୟସର ହେଇଥାଆନ୍ତା । ଆଉ ସେ ପୁଅଟି ହୁଏତ ଏମିତି ସମ୍ମାନ ପାଉଥାଆନ୍ତା ।

ତା'ପରେ ଦି' ଦଳ ଯୁଦ୍ଧକ୍ଷେତ୍ରକୁ ଗଲେ। ଗୋଟାଏ ଦିଗରେ ପାରସ୍ୟର ସେନା ରହିଲେ; ଆଉ ଗୋଟାଏ ଦିଗରେ ରହିଲେ ତୁରାନ୍ ଏବଂ ସାମେଙ୍ଗାନ୍‌ର ପାଇକ ବୀରମାନେ।

ରାତି ଆସିଗଲା। ରୁସ୍ତମ୍‌ଙ୍କ ମନରେ ଗୋଟାଏ ଅଦ୍ଭୁତ କୌତୂହଳ ଆସିଲା। ସେ ଲୁଚିଲୁଚି ତୁରାନ୍ ଶିବିରକୁ ଗଲେ। ସେତେବେଳକୁ ଶୋରାବ୍ ତାଙ୍କର ଅନ୍ୟ ସେନାପତିଙ୍କ ସହ ଖିଆପିଆ କରୁଥାଆନ୍ତି। ରୁସ୍ତମ୍ ଦୂରରୁ ଥାଇ ଦେଖିଲେ ଶୋରାବ୍‌ଙ୍କୁ! ଅଦ୍ଭୁତ! ଆଶ୍ଚର୍ଯ୍ୟ! ଇଏ କ'ଣ ଶୋରାବ୍! ଇଏ ତ ଭାହୋନ୍‌ଙ୍କ ପରି ଦିଶୁଛି। ସତେ କ'ଣ ରୁସ୍ତମ୍‌ଙ୍କ ସେଇ ଛୋଟ ଭାହୋନ୍ ପିଲାଟିଏ ହୋଇ ଜନ୍ମ ନେଲେ! ରୁସ୍ତମ୍ ଚମକିପଡ଼ିଲେ। ଏଥିରେ ତାଙ୍କ ମନରେ ଟିକେ ସନ୍ଦେହ ଆସିଲାନି। ସିଏ ନିଶ୍ଚିତ ଭାବରେ ଜାଣିଥିଲେ ଯେ, ତାମିନେ ଝିଅର ମା' – ପୁଅର ମା' ନୁହନ୍ତି। ଏ ପିଲା, ଏ ଦୁଷ୍ଟ ପିଲାଟା ଭାହୋନ୍‌ଙ୍କ ରୂପ ନେଇ ତାଙ୍କୁ ଦୁର୍ବଳ କରିଦେଉଚି; ତାଙ୍କ ମନକୁ ଦୋହଲାଇ ଦେଉଚି। ସେ ଗୋଟେ କୁହୁକ। ସେ! ନା, ନା, ରୁସ୍ତମ୍ ଏ କୁହୁକରେ ପଡ଼ିବେନି। ଏ ପିଲାଟା ଆଡ଼କୁ ଚାହିଁବେନି। ଏ ଗୋଟେ ମାୟାବୀ ଶିଶୁ! ଏ ପିଲାଟାକୁ ଯେତେ ଶୀଘ୍ର ଖତମ୍ କରିଦିଆଯିବ ସେତେ ଭଲ, ସେତେ ମଙ୍ଗଳ!

ଶୋରାବ୍ କ'ଣ ଭାବୁଥିଲେ! ଶୋରାବ୍ କୌତୂହଳୀ ହୋଇଉଠୁଥିଲେ ରୁସ୍ତମ୍‌ଙ୍କୁ ଜାଣିବା ପାଇଁ। ତାଙ୍କ ମନର ଗଭୀର ଆଗ୍ରହକୁ କେହି ସନ୍ତୁଷ୍ଟ କରିପାରିନଥିଲେ। ତୁରାନ୍‌ର ସେନା ସେନାପତି ଏ କଥାକୁ ଏଡ଼େଇ ଦେଉଥିଲେ। ଶୋରାବ୍ ଏଥିରେ ଅଧୀର ହେଉଥିଲେ। ସେ ସମୟରେ ତୁରାନୀମାନେ ଜଣେ ପାରସିକ ସୈନ୍ୟକୁ ବନ୍ଦୀ କରିଥିଲେ। ଶୋରାବ୍ ଏ ଲୋକଟିକି ପଚାରୁଥିଲେ "କୁହ ଭାଇ, ରୁସ୍ତମ୍ କେଉଁ ତମ୍ବୁରେ ରହନ୍ତି?" ସେ ଲୋକ ଭାବିଲା, ରୁସ୍ତମ୍‌ଙ୍କୁ ଜାଣିବାକୁ ଏ ପିଲାଟିର କ'ଣ ଏତେ ଆଗ୍ରହ! ଇଏ ତ ଆମ ଶତ୍ରୁଦଳର ଲୋକ! ଏ ପିଲାର ନିଶ୍ଚୟ କିଛି ମନ୍ଦ ଉଦ୍ଦେଶ୍ୟ ଅଛି। ଏ ଖବର ପାଇଲେ ହୁଏତ ସେ ତାଙ୍କୁ ଗୋପନରେ ମାରିବାକୁ ଚେଷ୍ଟା କରିପାରେ। ତା'ହେଲେ, ପାରସ୍ୟ ତା'ର ଶ୍ରେଷ୍ଠ ବୀରଙ୍କୁ

ହରାଇବ ଆଉ ଯୁଦ୍ଧରେ ହାରିଯିବ ଓ ଏ ପିଲା ଗୌରବ ନେବ ଯେ, ରୁସ୍ତମ୍‌କୁ ସିଏ ହରାଇଚି। ସେ ପାଟିକରି କହିଲା, ''ବୁଝିଲେ ଆଜ୍ଞା, ରୁସ୍ତମ୍ ଏ ଯାଏ କାବୁଲିସ୍ଥାନରୁ ଆସିନାହାନ୍ତି।''

ତା'ପରଦିନ ସକାଳେ... ଉଭୟ ପକ୍ଷର ଯୁଦ୍ଧବାଜା ବାଜି ଉଠିଲା। ଉଭୟ ପକ୍ଷର ସେନାପତି ଆଉ ସୈନ୍ୟମାନେ ଅସ୍ତ୍ରଶସ୍ତ୍ର ଧରି ତିଆର ହୋଇ ରହିଥାଆନ୍ତି; ଖାଲି ଟିକେ ସଙ୍କେତ ମିଳିଲେ ଉଭୟ ପକ୍ଷ ମଧ୍ୟରେ ଆକ୍ରମଣ ଆରମ୍ଭ ହୋଇ ଯାଇଥାଆନ୍ତା। ହଠାତ୍ ସମସ୍ତଙ୍କ ସାମନାକୁ ବାହାରି ଆସିଲେ ଶୋରାବ୍। ସେ କହିଲେ, ''ସମ୍ରାଟ୍ କାଇକାଉସ୍, ଉଭୟ ପକ୍ଷର ସୈନ୍ୟମାନେ ଏବେ ଠୁଳହେଇଚନ୍ତି। ଲଢ଼େଇ ହେଲେ, ଉଭୟ ପକ୍ଷର ଅନେକ କ୍ଷୟକ୍ଷତି ହେବ। ଆସନ୍ତୁ, ମୋ' ସହିତ ଦ୍ୱନ୍ଦ୍ୱଯୁଦ୍ଧ କରନ୍ତୁ। ସୈନ୍ୟମାନେ କେବଳ ଆମ ଯୁଦ୍ଧ ଦେଖିବେ। ସେମାନେ ଲଢ଼ିବା ପ୍ରୟୋଜନ ନାହିଁ।''

ଉଭୟ ପକ୍ଷର ସମସ୍ତେ ଚମକି ଉଠିଲେ। ଏତେଟିକେ ପିଲା! କେଡ଼େ ସାହସ ମ! କେହି କେହି କହିଲେ, ''ପିଲା ହେଲେ ବି ଠିକ୍ କଥା କହିଚି!''

ପାରସ୍ୟ ଶିବିରରେ ଭାଳେଣି ପଡ଼ିଲା। ନିଜେ କାଇକାଉସ୍ ଲଢ଼େଇ ବିଷୟରେ ସେତେ ଅଭିଜ୍ଞ ନୁହନ୍ତି। ସେ ଖାଲି ଖାଇବା, ପିଇବା, ମଉଜ କରିବା ଜାଣନ୍ତି। ଏପରି ଲଢ଼େଇକି ସେ ପ୍ରସ୍ତୁତ ନୁହନ୍ତି। କେବଳ ତାହା ନୁହେଁ, ପାରସ୍ୟ ଦଳରେ ଏପରି ଆଉ କେହି ବୀର ଏ ପିଲାଟି ସହ ଯୁଝିବାକୁ ପ୍ରସ୍ତୁତ ଥିଲା ପରି ମନେହେଲାନି। ସମସ୍ତେ ମନେମନେ ଡରୁଥିଲେ। ସେମାନେ ଏ ପିଲାଟିର ମୁହଁରେ ଏକ ବିଚିତ୍ର ତେଜ ଦେଖିପାରୁଥିଲେ। ସେ ତେଜରେ ସମସ୍ତେ ଅଭିଭୂତ, ଚକିତ ହେଇଯାଇଥିଲେ। ପାରସ୍ୟ ଶିବିରରେ ଏଥିପାଇଁ ହଇଚଇ ପଡ଼ିଗଲା। ସେମାନେ ଠିକ୍ କଲେ କେବଳ ରୁସ୍ତମ୍ ଏ ଡାକରାର ଜବାବ ଦେଇ ପାରିବେ। ନହେଲେ, ପାରସ୍ୟ ହାରିଲା ବୋଲି ଜାଣ।

ଅଳ୍ପ ଦୂରରେ ରୁସ୍ତମ୍ ତାଙ୍କ ତମ୍ବୁରେ ଥାଆନ୍ତି। ସେ ତମ୍ବୁଟି ସିମୁର୍ଗ ପରି ସଜା ହେଇଥାଏ। ଏଇ ସିମୁର୍ଗ ତାଙ୍କ ବାବାଙ୍କୁ ରକ୍ଷା

କରିଥିଲା। ଇଏ ତାଙ୍କ ବଂଶର ଚିହ୍ନ— ସନ୍ତକ।

ରୁସ୍ତମ୍ ଶୁଣି ପାରିଲେ, "ଆସନ୍ତୁ ଆସନ୍ତୁ... ରୁସ୍ତମ୍... ଆସନ୍ତୁ ବିଶ୍ୱବିଜୟୀ... ପାରସ୍ୟର ଇଜ୍ଜତ ଏବେ ରକ୍ଷା କରନ୍ତୁ।" ତାଙ୍କ ସୈନ୍ୟମାନେ ଡାକୁଛନ୍ତି।

ସେ ତମ୍ବୁରୁ ବାହାରି ଆସିଲେ। ପାରସ୍ୟର ଶହ ଶହ ସେନା ତାଙ୍କୁ ଘେରିଗଲେ। ସମସ୍ତେ ତାଙ୍କୁ କହୁଥିଲେ, "ମେଞ୍ଚଡ଼ ପିଲାଟିଏ ଆମ ରାଜାଙ୍କୁ ଯା'ଛା-ତା' କହିଯାଉଚି। କାଇକାଉସ୍ କୁଆଡ଼େ ଭୀରୁ... କାପୁରୁଷ! ଆପଣ ଏ ଦେଶର ସମ୍ମାନକୁ ଉଚ୍ଚ ରଖନ୍ତୁ ବୀର!"

ସେ ସଙ୍ଗେ ସଙ୍ଗେ ତାଙ୍କର କଳା ପୋଷାକ ପିନ୍ଧିନେଲେ। ରାକ୍ସ୍ ଉପରେ ଚଢ଼ିଲେ। କହିଲେ, "ଶୁଣନ୍ତୁ ବନ୍ଧୁମାନେ, ଏ ବଡ଼ ଲଜ୍ଜାର କଥା! ଲୋକେ ନ ଜାଣନ୍ତୁ ଯେ, ଦାଢ଼ି ନିଶ ଉଠି ନଥିବା ଗୋଟିଏ ପିଲାସଙ୍ଗେ ଲଢ଼ିବାକୁ ପାରସ୍ୟରେ କେହି ପୁଅ ନାହିଁ ଯେ, ବୀର ରୁସ୍ତମ୍‌ଙ୍କୁ ଯୁଦ୍ଧଭୂଇଁରେ ଠିଆହେବାକୁ ପଡ଼ିଲା। ଆପଣ କହିବେନି ଯେ, ରୁସ୍ତମ୍ ଲଢ଼ୁଚି।" ସମସ୍ତେ ଏ କଥାରେ ରାଜିହେଲେ।

ରୁସ୍ତମ୍ ଆସି ଯୁଦ୍ଧଭୂମିରେ ଉପସ୍ଥିତ ହେଲେ। ହେଲେ, କ'ଣ ସେ ଦେଖୁଚନ୍ତି! କେଡ଼େ ସାନ ପିଲାଟିଏ! ଛନଛନ କଅଁଳ ବୟସ! ଦେଖିଲେ କୋଳେଇ ନେବାକୁ ଇଚ୍ଛା ହେଉଚି। ତା' ସହିତ ଲଢ଼ିବେ ମହାବୀର, ବିଶ୍ୱବିଜୟୀ ରୁସ୍ତମ୍! ଏ ତ ରୁସ୍ତମ୍ ପ୍ରତି ଅପମାନ! ଆଉ ଏଇ ଟିକିପିଲାଟିର ଡାକରେ ପାରସ୍ୟବାହିନୀ ଛାନିଆ ହେଇଯାଇଥିଲା? ରୁସ୍ତମ୍‌ଙ୍କ ହୃଦୟରେ ସ୍ନେହ, ଦୟା, ସହାନୁଭୂତିର ସ୍ୱର ବାଜିଉଠିଲା। ସେ କହିଲେ, "ବାବୁ, ଏ କଅଁଳ ବୟସରେ ଲଢ଼େଇକି ଆସିଚ। ଏ ବୟସ ହସି ଖେଳି ଆନନ୍ଦ କରିବାର ବୟସ। ଫେରିଯାଅ! ଲଢ଼େଇକୁ ମନ ବଳାଅନି। ଅନ୍ତତଃ, ଆଜିର ଲଢ଼େଇରୁ ଓହରିଯାଅ।"

—"ଲଢ଼େଇରୁ ଫେରିବାପାଇଁ କହୁଚନ୍ତି ଯେ... ତା' ତ ହେଇପାରିବନି। ମୁଁ କେବଳ ମହାବୀର ରୁସ୍ତମ୍‌ଙ୍କୁ ଖାତିର କରେ! ସେ କହିଲେ, ମୁଁ ଫେରିଯାଇପାରେ। ଆଉ କିଏ କହିଲେ, ଶୁଣିବିନି। ଲଢ଼େଇ କରିବିଇ କରିବି। କହନ୍ତୁ, ଆପଣ କ'ଣ ମହାବୀର ରୁସ୍ତମ୍?"

ଶୋରାବ୍ କହିଲା।

‘‘ହାଃ. . . ହାଃ. . .!! କ’ଣ ଭାବୁଚ ବାଳକ . . . ରୁସ୍ତମ୍ ଆସିବେ ତମପରି ଏଇ ବକଟେନାକୁ ପିଲାସଙ୍ଗେ ଲଢ଼ିବାକୁ ? ରୁସ୍ତମ୍ ପାଖରେ ତମେ କିଛି ନୁହଁ। ମୁଁ ସେଇ ମହାବୀର ରୁସ୍ତମ୍‌ଙ୍କ ଜଣେ ଚାକର ମାତ୍ର !’’

ଏଥିରେ ଶୋରାବ୍ ଚିଡ଼ିଉଠିଲେ– ‘‘କ’ଣ କହୁଚନ୍ତି ମହାଶୟ ! ମୁଁ ପିଲା ହୋଇପାରେ; କିନ୍ତୁ ମୋ’ ଯୁଦ୍ଧକୌଶଳକୁ ଆପଣ ହସରେ ଉଡ଼େଇ ଦେଇପାରିବେନି।’’

ତା’ପରେ ଉଭୟେ ଆକ୍ରମଣ କଲେ ଉଭୟଙ୍କୁ। ପ୍ରଥମେ ସେମାନେ ବର୍ଚ୍ଛା ବ୍ୟବହାର କଲେ। ଗୋଟାକ ପରେ ଗୋଟାଏ ବର୍ଚ୍ଛା ଭାଙ୍ଗିଗଲା। ଧନୁଶର ବ୍ୟବହାର କଲେ। ସେ ସବୁ ବି ଶେଷ ହେଲା। ଗୋଛା ଗୋଛା ବର୍ଚ୍ଛା, ଗୋଛା ଗୋଛା ଶର ଜମାହୋଇ ରହିଲା। ସେ ଦିହେଁ ଖଣ୍ଡିଆଖାବରା ହେଲେ। ସେମାନଙ୍କ ଦିହରୁ ଲହୁ ବହିଲା। ସେମାନେ ବିରାଟ ବିରାଟ ଗଦା ଧରି ଲଢ଼ିଲେ। ଗଦାଉପରେ ଗଦା ବାଜୁଚି। ସେ ଶବ୍ଦରେ ଦୁଇପକ୍ଷର ସୈନ୍ୟମାନେ ଚମକୁଛନ୍ତି। ଗଦା ବାଜି ସେଥିରୁ ନିଆଁ ବାହାରୁଚି। କେହି ପଛକୁ ହଟୁନି। ଦିହେଁ ଦିହିଙ୍କି ବଳିଆର। କିଏ ସାନ, କିଏ ବଡ଼ କହିବା ସହଜ ନୁହେଁ। ଏମିତି ସକାଳୁ ଲଢ଼େଇ ଚାଲିଲା ସଞ୍ଜଯାଏ। ଟିକିଏ ବି ସେମାନେ ଅଟକିନାହାନ୍ତି, ଟିକିଏ ବି ବିଶ୍ରାମ ନେଇନାହାନ୍ତି। ଦୀର୍ଘ ବାରଘଣ୍ଟା ଧରି ଅବିରତ ସଂଗ୍ରାମ। ଉଭୟେ କୌଶଳୀ, ଉଭୟେ ପାରଙ୍ଗମ ! ଏଣେ ସୂର୍ଯ୍ୟ ବୁଡ଼ିବାକୁ ବସିଲା। ଉଭୟେ ଠିକ୍ କଲେ, ପ୍ରଥମ ଦିନର ଯୁଦ୍ଧ ସେଇଠି ବନ୍ଦ ହେଉ। ତା’ପରେ କାଲି ସକାଳୁ ଆରମ୍ଭ ହେବ।

ରୁସ୍ତମ୍ ଶିବିରକୁ ଫେରିଗଲେ। ଭାବୁଥିଲେ, ‘ଧନ୍ୟ ରେ ବାଳକ ! ଧନ୍ୟ ତୋର ବାପ-ମା’! ମୋ’ର ଏପରି ପୁଅଟିଏ ଥିଲେ ମୁଁ ଛାତି ଫୁଲାଇ ଚାଲୁଥାନ୍ତି ! ହାୟ ! ମୋ’ର ପୁଅଟିଏ ନାହିଁ ! ଆଉ ତୁ ସତରେ ମୋ’ଠୁ ବି ଭଲ ଯୋଦ୍ଧା।’

ଶୋରାବ୍ ବି ଏ ଯୁଦ୍ଧରେ ମୁଗ୍ଧ ! ଏମିତିକା ଯୁଦ୍ଧ ତାଙ୍କ

ସହ ଆଉ କିଏ ଲଢ଼ିପାରେନା ! ଇଏ କ'ଣ ରୁସ୍ତମ୍ ! ରୁସ୍ତମ୍ ବିନା ତା' ସହ ଲଢ଼ିବାକୁ ଆଉ ସମର୍ଥ କିଏ ? ସେ ଗୋଟି ଗୋଟି କରି ସମସ୍ତଙ୍କୁ ପଚାରିଲେ। କେହି କହିଲେନି, ଏ ମହାନ୍ ବୀରଟି କିଏ ! ସେ ତାଙ୍କର ବୁଢ଼ା ପରାମର୍ଶକଙ୍କୁ ପଚାରିଲେ– "କହନ୍ତୁ... ଇଏ କ'ଣ ରୁସ୍ତମ୍ ! ଇଏ କ'ଣ ମୋ' ବାପା ! ଇଏ... ଯେ ମୋ' ସହିତ ଆଜି ଲଢୁଥିଲେ ! କାରଣ ଏପ୍ରକାର ଲଢ଼େଇ ତ ସାଧାରଣ ବୀର କରିପାରିବନି !"

ବୁଢ଼ାଜଣକ କହିଲେ, "ବାବୁ, ପାରସ୍ୟ ଶିବିରରେ ରୁସ୍ତମ୍‌ପରି ଦିଶୁଥିବା ଜଣେ ଲୋକକୁ ବି ତ ମୁଁ ପାଇଲିନି।" ଏ ବୁଢ଼ା ଖୁବ୍ ବୟସ୍କ ହେଇଯାଇଥିଲେ। ତାଙ୍କ ଆଖିକି ଭଲ ଦିଶୁ ନଥାଏ।

ତୁରାନ୍‌ର ସେନାପତିମାନେ ତ କିଛି କହିଲେନି– ଆଫ୍ରାସିୟାବ୍ ସେଥିପାଇଁ କଡ଼ା ଆଦେଶ ଦେଇଛନ୍ତି। ସେମାନେ କହିଲେ, "ଇଏ ରୁସ୍ତମ୍ ନୁହନ୍ତି। ଇଏ ରୁସ୍ତମ୍‌ଙ୍କ ଚାକର !"

ତା' ପରଦିନ ସକାଳ... ଯୁଦ୍ଧଭୂଇଁରେ ବାଜିଲା ଯୁଦ୍ଧର ଭେରୀ। ଶୋରାବ୍ ଓ ରୁସ୍ତମ୍ ପରସ୍ପରକୁ ଚାହିଁ ଆହ୍ୱାନ କରୁଥିଲେ। ଶୋରାବ୍ ବୁଢ଼ା ରୁସ୍ତମ୍‌ଙ୍କୁ ଦେଖି ଭକ୍ତିବିଗଳିତ ହୋଇଉଠୁଥିଲେ। କେଜାଣି କାହିଁକି ତାଙ୍କ ପ୍ରତି ଗୋଟାଏ ଶ୍ରଦ୍ଧା ଜାତ ହେଉଥିଲା। ସେ ରୁସ୍ତମ୍‌ଙ୍କୁ କହୁଥିଲେ, "ମହାଶୟ, ଆସନ୍ତୁ ଶାନ୍ତି କରିନେବା। ଆପଣଙ୍କ ସହିତ ଶତ୍ରୁତା କରିବାକୁ ମୋ'ର ଇଚ୍ଛା ହେଉନି।"

ରୁସ୍ତମ୍ ରାଜିହେଲେନି। ସେ ଭାବୁଥିଲେ, ଏ ପିଲାଟି ବଡ଼ ଚାଲାଖ ଅଛି, ଏମିତି କହି ଯୁଦ୍ଧ ବନ୍ଦ କରିଦେବ। ବାହାରେ ପ୍ରଚାର ହେବ ଯେ, ସାମାନ୍ୟ ବାଳକଟାକୁ ରୁସ୍ତମ୍ ଯୁଦ୍ଧରେ ଜିଣିପାରିଲେନି। ତେଣୁ ସେ ଶୋରାବ୍‌ଙ୍କ କଥାରେ ରାଜି ହେଲେନାହିଁ। ଉଭୟଙ୍କ ଭିତରେ ପୁଣି ଯୁଦ୍ଧ ଚାଲିଲା।

ଆଜିର ଯୁଦ୍ଧରେ ଶୋରାବ୍ ପ୍ରଥମେ ରୁସ୍ତମ୍‌ଙ୍କୁ ହରାଇଦେଲେ– ତାଙ୍କୁ ଫିଙ୍ଗି ଦେଲେ ଓ ମାଡ଼ି ବସିଲେ। ପରମୁହୂର୍ତ୍ତରେ ଶୋରାବ୍‌ଙ୍କ ବର୍ଛା ଚକ୍‌ଚକ୍ କରି ଉଠିଲା। ଆଉ ମୁହୂର୍ତ୍ତକ ଭିତରେ ସେ ବର୍ଛା ରୁସ୍ତମ୍‌ଙ୍କ ଗଳା ଭେଦକରିବ। ରୁସ୍ତମ୍ ପାଟିକରିଉଠିଲେ, "ବାଳକ,

ତମେ ପାରସ୍ୟର ଯୁଦ୍ଧ ନିୟମ ଜାଣନି। ପ୍ରଥମ ଥର ପରାଜୟରେ ଶତ୍ରୁକୁ ପାରସ୍ୟରେ ମାରନ୍ତିନାହିଁ। ଦୁଇଥର ହରାଇଲେ ତାକୁ ମରାଯାଏ।''

ଶୋରାବ୍ ସଙ୍ଗେ ସଙ୍ଗେ ଉଠାଇଆଣିଲେ ତାଙ୍କର ହାତ। ତାଙ୍କ ବୁକୁର ଅଜଣା କୋଣରେ ଏ ବୃଦ୍ଧ ଯୋଦ୍ଧାଙ୍କ ପାଇଁ ଅନେକ ଶ୍ରଦ୍ଧା ଜାଗିଉଠିଲା।

ଏ ବେଳକୁ ସୂର୍ଯ୍ୟ ଅସ୍ତଯାଉଥିଲେ। ନିୟମ ଅନୁସାରେ ସେ ଦିନର ଯୁଦ୍ଧ ସେଇଠି ବନ୍ଦ ରହିଲା। ସେମାନେ କାଲିକି ପୁଣି ଭେଟିବେ କହି ନିଜ ନିଜ ତମ୍ବୁକୁ ଫେରିଗଲେ।

ରୁସ୍ତମ୍ ତମ୍ବୁରେ ମହାଚିନ୍ତାରେ ବୁଡ଼ିଗଲେ। ସେ ଜୀବନରେ ଅନେକ ଯୋଦ୍ଧା ସହିତ ଲଢ଼ିଛନ୍ତି— ହେଲେ ଏମିତି ଗୋଟାଏ ବୀର ସହିତ ସେ କେବେ ଲଢ଼ିନାହାନ୍ତି। ଏ ଗୋଟାଏ ପିଲା ମାତ୍ର। ତା' ଦିହରେ କେତେ ବଳ! କେତେ କୌଶଳ! ସତେ ଯେମିତି ଯୁଦ୍ଧର ଦେବତା ନିଜେ ରୂପ ନେଇ ଓହ୍ଲାଇ ଆସିଚନ୍ତି! ମାତ୍ର ତାକୁ ଜିଣିବାକୁ ହେବ। ନହେଲେ, ପାରସ୍ୟ ହାରିବ— ପାରସ୍ୟର ସମ୍ମାନରେ ଆସିବ ଆଞ୍ଚ। ପାରସ୍ୟର ମଣି ରୁସ୍ତମ୍ଙ୍କ ଗୌରବରେ କଳଙ୍କ ଲାଗିବ। ଯୁଦ୍ଧରେ ଜୟଲାଭ କରିବାକୁ ସେ ସମସ୍ତ ଦେବତାଙ୍କୁ ପ୍ରାର୍ଥନା କରିବାରେ ଲାଗିଗଲେ।

ସକାଳ ଆସିଲା। ପୁଣି ଯୁଦ୍ଧର ବାଜା ବାଜିଲା। ଏଥର ରୁସ୍ତମ୍ଙ୍କ ରକ୍ତରେ ଏକ ଉଷ୍ମତା ଖେଳିଗଲା। ସେ ଭୟଙ୍କର ହୋଇ ଉଠିଲେ। ଦୁଇ ବୀର ନିଷ୍ଠୁରଭାବରେ ପରସ୍ପରକୁ ଆକ୍ରମଣ କଲେ। କୋଉ ମୁହୂର୍ତ୍ତରେ କିଏ ତଳେ ପଡ଼ିବ, କେହି କହି ପାରୁନଥାଏ। ଦୁଇ ଦିଗରେ ଦୁଇ ଦେଶର ସୈନ୍ୟମାନେ ନିଃଶ୍ୱାସ ବନ୍ଦ କରି ଏ ବିଚିତ୍ର ଲଢ଼େଇ ଦେଖୁଥାଆନ୍ତି। ସେମାନେ ପଲକ ପକାଉ ନଥାଆନ୍ତି। ନିଜ ନିଜ ଭିତରେ କଥା ହେଉନଥାଆନ୍ତି। ସେମାନଙ୍କ ହାରଜିଣା ଉପରେ ଦୁଇଟା ଦେଶର ଭାଗ୍ୟ ନିର୍ଭର କରୁଛି।

ହଠାତ୍ ରୁସ୍ତମ୍ ଅନୁଭବ କଲେ, ଶୋରାବ୍ଙ୍କ ମୁଠା କେମିତି ଶିଥିଳ ହେଇଯାଇଚି। ସେ ନିଜର ସବୁ ବଳ ଏକାଠି କଲେ, ଆଉ ଶୋରାବ୍ଙ୍କୁ ଫିଙ୍ଗି ତଳେ ମାଡ଼ିବସିଲେ। ପବନରେ ଝଲସି

ଉଠିଲା ରୁସ୍ତମ୍‌ଙ୍କର ତୀକ୍ଷ୍ଣ ଛୁରୀ ଓ ବିଦ୍ଧ କଲା ଶୋରାବ୍‌ଙ୍କ ବକ୍ଷ। ତୁରାନୀୟମାନେ ପାଟିକରିଉଠିଲେ। ପାରସିକମାନେ ଆନନ୍ଦରେ ନାଚିଉଠିଲେ।

ରୁସ୍ତମ୍ ମନକୁ ମନ ଲଜ୍ଜା ପାଇଲେ। ସେ କ'ଣ କଲେ! ସେ ଯୁଦ୍ଧର ନିୟମ ଭାଙ୍ଗିଲେ। ଦୁଇଥର ହରାଇଲାପରେ ସେ ଛୁରୀ ବ୍ୟବହାର କରିଥାଆନ୍ତେ! କିନ୍ତୁ ଗୋଟାଏ ଦୁର୍ବଳ ବେଳରେ ସେ ଆଜି ଛୁରୀ ମାରୁଛନ୍ତି— ତାହା ପୁଣି ତାଙ୍କଠାରୁ ଅନେକ ସାନ ବାଳକର ବକ୍ଷରେ।

ଶୋରାବ୍‌ଙ୍କ କଣ୍ଠରେ ମର୍ମରି ଉଠିଲା, "ହେ ବୃଦ୍ଧ ବୀର, ଆଜି ଦେଶଠୁ ଅନେକ ଦୂରରେ ମୁଁ ତୁମରି ହାତରେ ମରୁଚି। ମାତ୍ର ମନେରଖ, ମୋ' ମରଣଇ ତମର ମରଣ ହେବ। ମୋ' ପିତା କିଏ ବୋଧହୁଏ ଜାଣିନ। ମୋ' ପିତା ହେଉଚନ୍ତି ବିଶ୍ୱବିଖ୍ୟାତ ବୀର ରୁସ୍ତମ୍। ସେ ତୁମକୁ କେବେ କ୍ଷମା ଦେବେନି। ସେ ମୋ' ମୃତ୍ୟୁର ପ୍ରତିଶୋଧ ନିଶ୍ଚୟ ନେବେ।"

ଶୋରାବ୍‌ଙ୍କ ଏ କଥାଗୁଡ଼ିକ ରୁସ୍ତମ୍‌ଙ୍କ ବଜ୍ରକଠୋର ହୃଦୟକୁ ଶୂଳପରି ବିନ୍ଧିଲା। ସେ ବି କହିଲେ, "ଆରେ କ'ଣ କହୁଚୁ! ରୁସ୍ତମ୍‌ର ପୁଅଟିଏ ଥିଲେ, ତୋ' ପରି ହେଇଥାନ୍ତା।"

ରୁସ୍ତମ୍‌ଙ୍କ ଚେତନା ଲୋପପାଇଲା। ତାଙ୍କ ଚେତା ଆସିଲାପରେ ସେ ଗୁରୁଣ୍ଡି ଗୁରୁଣ୍ଡି ଯାଇ ଶୋରାବ୍‌ଙ୍କ ପାଖରେ ପହଞ୍ଚିଲେ। ଦେଖିଲେ ସେ ବାଳକ ବୀର ତାଙ୍କୁ ଶ୍ରଦ୍ଧାର ଆଖିରେ ଚାହିଁରହିଚି। ମୃତ୍ୟୁର ଯନ୍ତ୍ରଣା ତାକୁ ଦୁର୍ବଳ କରିଦେଇନି। ତା' ମୁହଁରେ ଦୁଃଖଦେଇନି। ରୁସ୍ତମ୍ ଶୋରାବ୍‌ଙ୍କୁ ପଚାରିଲେ, "କ'ଣ କହିଲ! ତମେ ରୁସ୍ତମ୍‌ର ପୁଅ? କିନ୍ତୁ କି ଚିହ୍ନ ଅଛି ତମର!!!"

ବାଳକଟି କହୁଥିଲା, "ମୁଁ ଏଯାଏ ଜାଣେନି ଆପଣ କିଏ? ହୁଏତ ଆପଣ ରୁସ୍ତମ୍ ହେଇପାରନ୍ତି। ସେଇକଥା ମୁଁ ଆଗରୁ ବାରବାର ପଚାରିଚି। ମା'ଙ୍କୁ କହି ମୁଁ ଆଜିଯାଏ ଖୋଜିବୁଲୁଚି ରୁସ୍ତମ୍‌ଙ୍କୁ... ମୋ' ବାବାଙ୍କୁ। ଆପଣଙ୍କୁ ପହିଲୁ ଦେଖିବାବେଳରୁ ମୋ' ମନରେ କେମିତି ବିଚିତ୍ର ଗୋଟେ ଆନନ୍ଦ, ଗୋଟେ ଶ୍ରଦ୍ଧା ଆସୁଥିଲା। ଆଜିର

ମୃତ୍ୟୁର କୋଳରେ ଶୋଇ ଶେଷ ନିଃଶ୍ୱାସ ଛାଡ଼ିବାକୁ ଗଲାବେଳେ ବି ଆପଣ ମୋ'ର ବହୁ ଶ୍ରଦ୍ଧା ଓ ଭକ୍ତିର କେନ୍ଦ୍ର ହୋଇ ରହିଚନ୍ତି। ଆପଣଙ୍କୁ କହି ରଖୁଚି... ମୋ' ପୋଷାକ ତଳେ, ମୋ' ବାହୁ ଦେଖନ୍ତୁ। ସେଇଠି ରହିଚି ରୁସ୍ତମ୍‌ଙ୍କ ଚିହ୍ନ।

ରୁସ୍ତମ୍ ପ୍ରାୟ ପାଗଳ ହୋଇଉଠିଲେ। ସେ ଶୋରାବ୍‌ଙ୍କ ବାହୁରେ ତାଙ୍କ ପ୍ରଦତ୍ତ ତାବିଜ୍ ଦେଖିଲେ। ପାଟିରୁ ତାଙ୍କ କଥା ବାହାରିଲାନି। ତା'ପରେ ସେ ଶୋରାବ୍‌କୁ କୁଣ୍ଢାଇଧରି ବିକଳଭାବେ କାନ୍ଦିବାକୁ ଲାଗିଲେ। ସେ ପାଗଳପରି କହୁଥିଲେ, "ଶେଷରେ, ମୁଁ... ମୁହିଁ ମୋ' ପୁଅକୁ ମାରିପକାଇଲି ? ଏପରି ପୁଅ କୋଟିକରେ ଗୋଟିଏ ମିଳିବନି। ମୁଁ ଏ କ'ଣ କଲି ! ଏ ବୟସରେ, ଯିଏ ମୋ'ର ସବୁ ଆଶା-ଭରସାର ସ୍ଥଳ, ତା'ର ଜୀବନ ନେଲି। କ'ଣ କହି ତୋ' ମା'ଙ୍କୁ ଖବର ଦେବି... ବାବା ! କେତେ ଥର ତୁ ମୋତେ ପଚାରିଚୁ, ହେଲେ ମୁଁ କିଛି ବୁଝିପାରିଲିନି।

"ତୋ' ପରି ପୁଅର ବାବା ହେବାପାଇଁ ମୁଁ ଅଯୋଗ୍ୟରେ ଶୋରାବ୍ ! ମୋ'ର ଏ ଜୀବନର ଆଉ କି ମୂଲ୍ୟ ଅଛି ! ମୋ' ଜୀବନ ଶେଷ ହେବା ଉଚିତ।" ରୁସ୍ତମ୍ ତାଙ୍କର ତଲୁଆର ଖୋଲି ନିଜକୁ ହତ୍ୟାକରିବାକୁ ଉଦ୍ୟତ ହେଲେ।

ଶୋରାବ୍ କହିଲେ, "ବାବା, ବାବା, ଆଜି ମୋ'ର ଜୀବନର ସବୁଠୁ ବଡ଼ ଆନନ୍ଦର ଦିନ। ଆପଣଙ୍କୁ ଖୋଜିବାକୁ ବାହାରିଥିଲି – ଆପଣଙ୍କୁ ପାଇଲି। ହୁଏତ ଆପଣଙ୍କ ହାତରେ ମୋ'ର ମୃତ୍ୟୁର ଯୋଗ ଥିଲା – ଏଥିରେ କାହାରି ଦୋଷ ନାହିଁ। ମୁଁ ଏବେ ଶାନ୍ତିରେ ମରିପାରିବି। ମାତ୍ର ଆପଣ ମୋ'ର ଛୋଟ କଥାଟିଏ ରଖନ୍ତୁ। ପୁଅଭାବେ କେବେ କିଛି ଅଳିକରିନି; ଆଜି ଜୀବନର ଶେଷକାଳରେ ଆପଣଙ୍କୁ ମାଗୁଚି... ମୋତେ ଦେବେ ବାବା ! ମୋତେ ନିରାଶ କରିବେନି। ଆପଣ ଆତ୍ମହତ୍ୟା କରିବେନି।"

ଶୋରାବ୍‌ଙ୍କ କଥା ଶୁଣି ରୁସ୍ତମ୍ ତଲୁଆର୍ ଫିଙ୍ଗିଦେଲେ। ସେ ମୁମୂର୍ଷୁ ପୁଅକୁ ଜାବୁଡ଼ିଧରିଲେ।

ଦୂରରୁ ଉଭୟ ପକ୍ଷର ସେନାପତି ଓ ସୈନ୍ୟମାନେ ଏହା

ଦେଖୁଥିଲେ। ସେମାନେ ଭାବିଲେ, ଶୋରାବ୍ ଗଲା; ଗଲେ ବି ରୁସ୍ତମ୍। ଉଭୟ ଶିବିରରେ କାନ୍ଦର ବିକଳ ଧ୍ୱନି ଶୁଭିଲା। ରାକ୍ଷ୍ଣ୍ ପାଗଳପରି ବୋବାଉଥାଏ।

ପାରସ୍ୟର କେତେକ ବୀର ପ୍ରକୃତ କଥା ଜାଣିବାକୁ ଯୁଦ୍ଧଭୂଇଁକି ଗଲେ। ଦେଖିଲେ ରୁସ୍ତମ୍ ଶୋରାବ୍‌ଙ୍କ ମୁଣ୍ଡଟିକି ଧରି କାନ୍ଦୁଛନ୍ତି। ପିଲାଟି ତାହାଙ୍କୁ ସାନ୍ତ୍ୱନା ଦେଉଚି। କିନ୍ତୁ ପିଲାଟିର ମନରେ ଅସୀମ ଦୁଃଖ। କେତେଦିନ ସିଏ ବଞ୍ଚିଲା! ବାପାଙ୍କ ସ୍ନେହ ସେ ପାଇଲା କୋଉଠୁ!

ତା'ପରେ ଶୋରାବ୍ ପୁଣି କହିଲେ, "ତୁରାନ୍‌ର ସୈନ୍ୟମାନଙ୍କର କିଛି ଦୋଷ ନାହିଁ ବାବା! ସେମାନଙ୍କୁ କ୍ଷମା କରିବେ। କ୍ଷମା କରିବେ ମୋ' ସୈନ୍ୟମାନଙ୍କୁ। ମୁଁ ଭାବିଥିଲି, ପାରସ୍ୟର ସମ୍ରାଟ୍ କାଇକାଉସ୍‌କୁ ହରାଇବି ଓ ଆପଣଙ୍କୁ ବସାଇବି ସିଂହାସନରେ। ତା' ହେଇପାରିଲାନି। ତେଣୁ ମୋ ଇଚ୍ଛାରେ ସେମାନେ ଆସିଥିଲେ। ସେମାନେ ନିର୍ଦ୍ଦୋଷ! ମୋ'ରଇ ସବୁ ଦୋଷ! ସେମାନେ ନିର୍ବିଘ୍ନରେ ଫେରିଯାଆନ୍ତୁ!"

ରୁସ୍ତମ୍ ସ୍ୱୀକୃତି ଦେଲେ। ଶୋରାବ୍‌ଙ୍କ ଦିହରୁ ଅଜସ୍ର ରକ୍ତ ବହୁଥାଏ। ଆଉ ଯୁଦ୍ଧର କୌଣସି ଚିନ୍ତା ରହିଲାନି। ଉଭୟ ପକ୍ଷର ସେନା-ସେନାପତି ଫେରିଗଲେ। ରୁସ୍ତମ୍ ପୋଡ଼ିଦେଲେ ତାଙ୍କର ଯୁଦ୍ଧ-ପୋଷାକ ଆଉ ଯୁଦ୍ଧର ସାଜ। ସେ ପୁଅର ଶବକୁ ବୋହିନେଲେ ଜାବୁଲିସ୍ଥାନକୁ। ସେଠି ସେ ଶବକୁ କବର ଦେଲେ।

ସାମେଙ୍ଗାନ୍‌କୁ ଫେରିଆସିଲେ ସୈନ୍ୟ। ତାମିନେ ଏ ଖବର ପାଇ ପାଗଳିନୀ ହୋଇଗଲେ। ସେ ନିଜକୁ ଦୋଷିଲେ। ତାଙ୍କରି ଦୋଷରୁ ତାଙ୍କ ପୁଅଟି ଆଜି ବାପର ହାତରେ ମରଣବରଣ କଲା। ସେ ଖିଆପିଆ ଛାଡ଼ିଦେଲେ। ଆଉ ଦେବତାମାନେ ତାଙ୍କୁ ଶୀଘ୍ର ନେଇଗଲେ ଶୋରାବ୍‌ଙ୍କ ପାଖକୁ।

# ବାଇଜୁନ୍ ଓ ମାନିଜେ

ସେତେବେଳେ ପାରସ୍ୟର ସମ୍ରାଟ୍ ଥା'ନ୍ତି କାଇଖସ୍ରୁ। ତାଙ୍କ ସଭାରେ ଜଣେ ବୀର ଥିଲେ। ତାଙ୍କ ନାଁ ଗାର୍ଜିନ୍। ସମ୍ରାଟ୍ ତାଙ୍କୁ ଖୁବ୍ ଭଲ ପାଉଥିଲେ; ଖୁବ୍ ଖାତିର କରୁଥିଲେ।

କ୍ରମେ ଗାର୍ଜିନ୍ ବୁଢ଼ା ହେଲେ। ବଳ ଖସିଲା। ବୟସ ଗଲା। ଇଏ ତ ଦୁନିଆର ରୀତି— ନୂଆ ଯିଏ, ପୁରୁଣା ହୁଏ; ଛୁଆ ଯିଏ ଭେଣ୍ଡା ହୁଏ, ଭେଣ୍ଡା ଯିଏ, ବୁଢ଼ା ହୁଏ; ଗାର୍ଜିନ୍ ଏକଥା ବୁଝି ଅବୁଝା ହେଉଥିଲେ। ଇଏ ଗୋଟାଏ କଥାର କଥା ନା! ତମେ ସବୁଦିନ ବଡ଼ ହେଇ ଥିବ! ତମ କଥାରେ ମୂଲକ ଚାଲୁଥିବ! ତମେ ସବୁ। ତମ ଛଡ଼ା ଦେଶ ଅନ୍ଧାର! ଦେଶରେ ତ ଆଉ ଆଉ ଲୋକ ଅଛନ୍ତି। ସେମାନଙ୍କର ବୁଦ୍ଧିଶୁଦ୍ଧି ଅଛି। ସେମାନଙ୍କର ବଳ-ବୟସ ଅଛି। ସେତେବେଳେ ଦରବାରରେ ଅନେକ ଯୁବକବୀର ଥିଲେ। ସେମାନେ ଥିଲେ ପାରସ୍ୟର ଆଗାମୀ ଯୁଗର ସେନାପତି।

ଗାର୍ଜିନ୍ ଏ କଥାଟା ସହିପାରୁନଥିଲେ। ତାଙ୍କର ବେଶୀ ରାଗ ହେଉଥାଏ ବାଇଜୁନ୍‌ଙ୍କ ଉପରେ। ଇଏ ଜଣେ ଯୁବକବୀର। ଏହାଙ୍କ ପୂର୍ବପୁରୁଷ ହେଉଛନ୍ତି ରୁସ୍ତମ୍। ରୁସ୍ତମ୍ କହିଲେ ପାରସ୍ୟ; ପାରସ୍ୟ କହିଲେ ରୁସ୍ତମ୍। ରୁସ୍ତମ୍‌ଙ୍କର ବୀରରକ୍ତ ଥିଲା ବାଇଜୁନ୍‌ଙ୍କ ଦିହରେ। ଲୋକେ ଭାବୁଥିଲେ, ସେ ଦିନେ ରୁସ୍ତମ୍‌ଙ୍କ ପରି ବଡ଼ ବୀର ହେବେ। ସମ୍ରାଟ୍ ବି ସେଇପରି ଆଶା ପୋଷିଥିଲେ।

ବାଇଜୁନ୍ ସୁଯୋଗ ଖୋଜୁଥିଲେ— ତାଙ୍କ ବଳ, ସାହସର ସେ ପରୀକ୍ଷା ଦେବେ, ତାଙ୍କ ବୁଦ୍ଧି-କୌଶଳ ଦେଖାଇଦେବେ। ତାଙ୍କରି ପୂର୍ବପୁରୁଷ ତ ଦିନେ ସମସ୍ତଙ୍କ ଆଖି ଝଲସାଇଥିଲେ।

ହଠାତ୍ ଖବର ଆସିଲା, ଆମାନ୍ ରାଜ୍ୟରେ ବିପଦ ପଡ଼ିଚି। ସେଠି ବଣୁଆ ବାରହା ଆକ୍ରମଣ କରିଛନ୍ତି। ବାଇଜୁନ୍ କହିଲେ, ସେ ଆମାନ୍ ଯିବେ। ଗାର୍ଜିନ୍ ବାଇଜୁନ୍‌ଙ୍କୁ ସହିପାରୁନଥିଲେ। ସେ ଭାବୁଥିଲେ, ଟୋକାଟା ଦେଖେଇହେଉଚି, ଫୁଟାଣି ଜାଡୁଚି, ଆଉ

ଗର୍ବରେ ଫାଟିପଡୁଚି। ସମ୍ରାଟ୍ କହିଲେ, ''ଜାର୍ଜିନ୍, ଯାଅ– ଯାଅ ବାଇରୁନ୍ ସାଥିରେ। ତା'ଙ୍କୁ ସାହସ ଦେବ।''

ଜାର୍ଜିନ୍ ବାଇରୁନ୍ ଆମାନ୍ ଗଲେ। ସେମାନେ ମିଶିକରି ସେ ଦେଶକୁ ରକ୍ଷାକଲେ। ତା'ପରେ ଘରକୁ ଫେରିବା କଥା। ଘର ବେଶ୍ ଅନେକ ଦୂର ଅଛି। ଜାର୍ଜିନ୍ ଭାବୁଥିଲେ, 'ଏ ଟୋକା ହାତରୁ ରକ୍ଷାପାଇବା ଉଚିତ। କିଛି ନହେଲା ପଛେ, ଏ ପୁଣି ତାଙ୍କର ସମକକ୍ଷ ହେବ। କି ହୋ, କାଲିର ଯୋଗୀ ମୁଣ୍ଡରେ ଜଟ; ସବୁକଥାକୁ ଫଅଟ ଫଟ!' ସେ ମନେ ମନେ ଗୋଟେ ଚକ୍ରାନ୍ତ କଲେ।

ଦିନେ ସେ ଦିହେଁ ତମ୍ବୁରେ ଶୋଇବାକୁ ଯାଉଚ଼ନ୍ତି, ଜାର୍ଜିନ୍ ପଚାରିଲେ, ''ବାଇରୁନ୍, ତମେ ସେଇ ସୁନ୍ଦରୀ ଝିଅଟିର ନାଁ ଶୁଣିଥିବ।''

—''କାହାର . . . ?''

—''ମାନିଜେ—''

—''ମାନିଜେ!''

—''ହଁ, ମାନିଜେ– ତୁରାନ୍ ରାଜା ଆଫ୍ରାସିୟାବ୍‌ଙ୍କ ଝିଅ!''

—''ହଁ, ତାଙ୍କ ନାଁ ଶୁଣିଚି . . .''

—''ଜାଣିନାହଁ କିନ୍ତୁ। ତୁରାନ୍‌ର କବିମାନେ କହନ୍ତି, ତାଙ୍କପରି ସୁନ୍ଦରୀ ଏ ଜଗତରେ କେହି ନାହାଁ। ହାତୀଦାନ୍ତ ପରି ଧଳା ଦିହ, ଭ୍ରମରପରି ବାଳ। ଆଖିରେ ଯୁଗ-ଯୁଗର ସ୍ୱପ୍ନ! ରୂପର ସିଏ ପ୍ରତିମାଟିଏ। ଜୀବନରେ ଯିଏ ତାଙ୍କୁ ଦେଖିନି ତା' ଜୀବନ ବୃଥା; ସିଏ ସୁନ୍ଦର କ'ଣ ଜାଣିନି।''

ବାଇରୁନ୍‌ଙ୍କ ମନରେ ଗୋଟାଏ ବିଜୁଳି ଖେଳିଗଲା। ସେ ସିଧା ଜାର୍ଜିନ୍‌ଙ୍କ ପାଖକୁ ଆଗେଇଆସିଲେ। ସେ ବ୍ୟାକୁଳହୋଇ ପଚାରିଲେ, ''ତେବେ ଏହାଙ୍କୁ କେମିତି ଦେଖନ୍ତେ!''

ବୁଢ଼ା ଦେଖିଲେ, ଔଷଧ ଠିକ୍ କାଟୁ କରିଚି। ସେ ମନେ ମନେ ହସିଲେ। ଏ ହସ ଥିଲା ସନ୍ତୋଷର ହସ। କହିଲେ, ''ଇଏ ତ ଗୋଟେ ଅସମ୍ଭବ କଥା। ରଜାଘର କଥା! ସେଠି ଅନେକ କାଇଦା କଟକଣା। ତା'ଛଡ଼ା ରାଜଧାନୀରୁ ତୁରାନ୍ ଆସିବା ତ ବହୁତ ସମୟ ନେବ। ତେବେ ଗୋଟେ ଉପାୟ ଅଛି . . .''

—''ଉପାୟ ଅଛି ଯଦି କହନ୍ତୁନା ?''

—''ଏବେ ଆମେ ତୁରାନ୍ ସୀମାର ପାଖରେ ଅଛେ ! ଏଠାରେ ଚଷାମାନେ କହନ୍ତି, ବସନ୍ତଋତୁରେ ରଜାଝିଅ ଗୋଟାଏ ସୁନ୍ଦର ବଗିଚାରେ କାଳକଟାନ୍ତି । ସେ ବଗିଚାଟି ଏଠୁ ଅତି ଅଳ୍ପ ଦୂରରେ ଅଛି । ଚାଲ, କାଲି ସେଠିକି ଯିବା । ସେଠି ଲୋକମାନଙ୍କୁ ହାତକରିବା । ଦେବା ଗିପ୍‌ପତ୍— ଲାଞ୍ଚ ! ତା'ପରେ ସେ ଝିଅକୁ ଦେଖାକରି ସାରିଲେ ଫେରିଯିବା ପାରସ୍ୟକୁ ।''

ଜାର୍ଜିନ୍ ଏପରି କହିଲାବେଳେ, ଗୋଟାଏ ନିର୍ଦ୍ଦିଷ୍ଟ କଥା ଭାବୁଥିଲେ । ପାରସ୍ୟ ଦେଶର ଏଇ ଉଦ୍ଧତ ଯୁବକ ଯଦି ସେ ସୁନ୍ଦରୀ ଢେମାକୁ ଦେଖିବାର ଚେଷ୍ଟାକରନ୍ତି— ଫଳ ଓଲଟା ହେବ । ତୁରାନ୍ ରାଜା ଜାଣିବା ସଙ୍ଗେ ସଙ୍ଗେ ତାର ମୁଣ୍ଡକାଟର ବ୍ୟବସ୍ଥା ହେବ । ତା'ହେଲେ ନିଜ ବାଟରୁ କଣ୍ଟାଯିବ ।

ତା'ପରଦିନ ସକାଳୁ . . .

ସେମାନେ ଖୁବ୍ ବେଗି ଉଠିପଡ଼ିଲେ । ଚାକରବାକର ଆଦିଙ୍କି କହିଲେ ଯେ ଘୋଡ଼ା, ଗଧ ଆଦିକି ସଜାଇ ରଖିବ । ଜିନିଷପତ୍ର ବନ୍ଧାଛନ୍ଦା କରି ରଖିବ । ସେମାନେ ପାରସ୍ୟର ବାଟରେ ଗୋଟାଏ ଜାଗାରେ ଯାଇ ଏମାନଙ୍କୁ ଅପେକ୍ଷା କରିବେ । ଏମାନେ ତୁରାନ୍ ଯିବେ; ସେଠି ସେ କାମଟି ସାରି ତାଙ୍କ ଲୋକମାନଙ୍କୁ ବାଟରେ ଭେଟିବେ ।

ଠିକ୍ ସମୟରେ ସେମାନେ ରାଜକୁମାରୀ ଯୋଉଠି ଥିଲେ, ସେଠି ପହଞ୍ଚିଗଲେ । ସେଠି ଚତୁର୍ଦ୍ଦିଗରେ ଅନେକ ସୁନ୍ଦର ସୁନ୍ଦର ଗଛଲତା ଭିତରେ ତମ୍ବୁ ପଡ଼ିଥାଏ । ତା' ଭିତରେ ଗୋଟାଏ ବଡ଼ ତମ୍ବୁ । ଲାଲ୍ ଟକଟକ କୃଷ୍ଣଚୂଡ଼ାର ରଙ୍ଗ । ଅନେକ ଛୁଞ୍ଚିକାମ ହେଇଚି । ମୟୂରଚନ୍ଦ୍ରିକାରେ ସଜା ହେଇଚି । ସେ ଦିହେଁ ସେଇ ତମ୍ବୁ ଆଡ଼କୁ ଚାଲିଲେ; ସେଇ ତମ୍ବୁ ବାଟେ ଗଲେ । ବାଇଜୁନ୍ ଖୋଜିଲା-ଆଖିରେ ତମ୍ବୁ ଆଡ଼କୁ ଅନାଇଁ ରହିଥାଆନ୍ତି । ଅନେକ ଶିଳ୍ପକର ଗଦିଉପରେ ଅପୂର୍ବ ସୁନ୍ଦରୀ ଯୁବତୀଟିଏ ବିଶ୍ରାମ ନେଉଥାନ୍ତି । ସେ ଏମାନଙ୍କ ଆଡ଼କୁ ପଚାରିବାର ଆଖିରେ ଅନାଇଁ ରହିଥାନ୍ତି । ବାଇଜୁନ୍ ପ୍ରଶଂସାର

ଆଖିରେ ସେଇ ଆଖିଯୋଡ଼ିକ ଦେଖିଲେ। ସେ ଘୋଡ଼ାପିଠିରୁ ତାହାଙ୍କୁ ସମ୍ମାନ ଜଣାଇଲେ। ସେ ଜାର୍ଜିନ୍‌ଙ୍କ ସହ ତାହାଙ୍କୁ ଦେଖି ଦେଖି ଆଗକୁ ଚାଲିଗଲେ।

ବାଇଜୁନ୍ ସେ ଯୁଗର ପାରସ୍ୟର ସବୁଠୁ ସୁନ୍ଦର, ସୁଦର୍ଶନ ଯୁବକ। ମାନିଜେ ତାହାଙ୍କୁ ଦେଖିପାରିଲେ। ତାଙ୍କପ୍ରତି ଶ୍ରଦ୍ଧା ବଢ଼ିଲା ରାଜକୁମାରୀଙ୍କର। ସେ ବି ଚୁପ୍ ରହିଲେନି। ସେ ତାଙ୍କର ଧାଈକି ପଠାଇଲେ– "ଯାଅ... ଏ ଅପରିଚିତମାନେ କିଏ, ଖବର ଆଣ। ସେମାନଙ୍କ ପଛେ ପଛେ ଯାଅ।"

ଧାଈଟି ସେମାନଙ୍କୁ ଦେଖାକଲା। ନାନା ପ୍ରଶ୍ନ ପଚାରିଲା। ବାଇଜୁନ୍ ସବୁ ପ୍ରଶ୍ନର ଠିକ୍ ଠିକ୍ ଉତ୍ତର ଦେଲେ। ଶେଷକୁ କହିଲେ, "ରାଜକୁମାରୀ ଯଦି ଅନୁମତି ଦିଅନ୍ତେ... ମୁଁ ତାଙ୍କ ସହିତ ଟିକେ କଥା ହୁଅନ୍ତି !!"

ସଙ୍ଗେ ସଙ୍ଗେ ଦି'ଜଣଙ୍କର ସାକ୍ଷାତ୍ ହେଲା। ସେଇ ଦେଖାରେ ଦିହେଁ ଦିହିଁଙ୍କୁ ସୁଖ ପାଇବସିଲେ। ରାଜକୁମାରୀ ତାଙ୍କ ବାପାଙ୍କୁ ଭଲଭାବେ ଜାଣିଥିଲେ। ଯୋଉ ମୁହୂର୍ତ୍ତରେ ତାଙ୍କର ବାପା ଏକଥା ଜାଣିବେ, ଜାଣିବେ ସିଏ ଜଣେ ପାରସିକଙ୍କୁ ବିବାହ କରିବାକୁ ଚାହୁଁଛନ୍ତି, ସେ ରାଗି ପାଚିଯିବେ। ସେ ଦି'ଜଣଙ୍କ ଦେଖାସାକ୍ଷାତ୍ ବନ୍ଦ ହେଇଯିବ। ହେଇପାରେ, ବାଇଜୁନ୍‌ଙ୍କୁ ମାରିଦେଇପାରନ୍ତି। ତଥାପି ସେ ନିଜକୁ ବୁଝାଇପାରିଲେନି। ତାଙ୍କର ଧାଈକି କହିଲେ, ଜଣେ ପୁରୋହିତଙ୍କୁ ଡାକିଦେବାକୁ। ତା'ପରେ ଦି'ଜଣଙ୍କର ବିବାହ ହେଇଗଲା। ଅନ୍ୟ କେହି ଜାଣିଲେନି।

ଜାର୍ଜିନ୍‌ଙ୍କ ମନ ଆନନ୍ଦରେ ପୂରିଉଠିଲା। ଏଡ଼େ ସହଜରେ ବାଇଜୁନ୍ ଯେ ଏମିତି ଧରାପଡ଼ିଯିବେ, ଜାଲରେ ବାନ୍ଧିହେଇଯିବେ, ଏକଥା ସିଏ ଭାବିନଥିଲେ। ଏବେ ସେ ନିଶ୍ଚିନ୍ତ। ଇଏ ଆଉ ପାରସ୍ୟ ଫେରିପାରିବେନି।

ବାଇଜୁନ୍ ତାଙ୍କ ବିବାହକଥା ଜାର୍ଜିନ୍‌ଙ୍କୁ କହିଲେ। ବୁଢ଼ା ଖୁସିରେ ପାରସ୍ୟଆଡ଼କୁ ଫେରିଚାଲିଲେ। ବାଇଜୁନ୍ ସେଠି ରହିଗଲେ।

ଶେଷକୁ ରାଜକୁମାରୀଙ୍କ ଉଆସକୁ ଫେରିବାର ସମୟ ଆସିଲା। ବାଇଜୁନ୍ ଦେଖିଲେ, ସେ ଯଦି ତୁରାନ୍‌କୁ ଯିବେ, ସବୁ ସରିଯିବ।

ସିଧା ବିପଦର ପାଟି ଭିତରକୁ ସେ ପଶିଯିବେ। ମାନିଜେଙ୍କ ବାବା ତାଙ୍କୁ ଗ୍ରହଣ ତ କରିବେନି– କ୍ଷମା ବି ଦେବେନି। ତେଣୁ ସେ ତାଙ୍କ ସ୍ତ୍ରୀଙ୍କୁ କହିଲେ, ''ମୋତେ ମେଲାଣି ଦିଅ। ମୁଁ ପାରସ୍ୟକୁ ଫେରିଯାଏ। ସେଠି ପାରସ୍ୟର ସମ୍ରାଟ୍‌ଙ୍କ ସାହାଯ୍ୟରେ ଆଫ୍ରାସିୟାବ୍‌ଙ୍କ ସହ ସମ୍ପର୍କ ସ୍ଥାପନ କରିବି।''

ମାନିଜେ ସ୍ୱାମୀଙ୍କୁ ଛାଡ଼ିବାକୁ ଟିକେ ବି ରାଜି ନଥିଲେ। ସେଇ ସଙ୍ଗରେ ସେ ସ୍ୱାମୀଙ୍କୁ ଗ୍ଲାସେ ମଦ ପିଇବାକୁ ଦେଇ କହିଲେ, ''ମୋ ଜୀବନର ଆଲୋକ ତମେ। ମୋ' ଜୀବନର ସୁଖ, ମୋ' ଜୀବନର ଆନନ୍ଦ!! ଆମ ଦିହିଁଙ୍କର ଏଇ ସୁଖ ପାଇବାଟା ଆମ ଜୀବନର ଏକ ଅଙ୍ଗ ହେଇଯାଉ। ଆମର ମରଣଯାଏ ଏହା ଅତୁଟ ରହୁ।'' ବାଇଜୁନ୍ ସ୍ତ୍ରୀର କଥା ଶୁଣୁଥାନ୍ତି ଓ ଧୀରେ ଧୀରେ ମଦ ପିଉଥାନ୍ତି। ତାହାଙ୍କୁ ମୁଗ୍ଧନେତ୍ରରେ ଚାହିଁରହିଥାଆନ୍ତି ମାନିଜେ।

ସେ ମଦ ସାଧାରଣ ମଦ ନଥିଲା। ସେ ମଦରେ ଔଷଧ ମିଶିଥିଲା। ଔଷଧର ପ୍ରଭାବ ବାଇଜୁନ୍‌ଙ୍କ ଉପରେ ଖୁବ୍ କାମ ଦେଖାଇଲା। ସେ ମଦ ପିଉ ପିଉ ଶୋଇପଡ଼ିଲେ ଓ ଧୀରେ ଖୁବ୍ ଗହୀର ନିଦରେ ଅଚେତ୍ ପ୍ରାୟ ହୋଇଗଲେ। ସେଠି କ'ଣ ଘଟିଗଲା, ତା'ର ବିନ୍ଦୁ-ବିସର୍ଗ ସେ ଜାଣି ପାରିଲେନି। ତା'ରି ଭିତରେ ତମ୍ବୁ ଉଠିଲା। ଜିନିଷପାତି ବନ୍ଧାବନ୍ଧି ହେଲା। ଓଟସବୁ ଚାଲିଲେ ଏ ସବୁ ଧରି। ଖରାଦିନର ସେଇ ରାତିରେହିଁ ସେମାନେ ପହଞ୍ଚିଗଲେ ତୁରାନ୍‌ରେ।

ବାଇଜୁନ୍‌ଙ୍କ ନିଦ ଭାଙ୍ଗିଲାବେଳକୁ ଦିନ ଅନେକ ଆଗେଇସାରିଥାଏ। ସେ ସମୟରେ ସେ ନିଜକୁ ରାଜକୁମାରୀଙ୍କ କୋଠରିରେ ଦେଖି ଚମକି ଉଠିଲେ। ସେ କିଛି ବୁଝିପାରିଲେନି। ସବୁକଥା ଜାଣି ସେ ଖୁବ୍ ରାଗିଉଠିଲେ ଓ ମାନିଜେଙ୍କୁ ନିଷ୍ଠୁରଭାବେ ଗାଳିଦେଲେ– ସେ ବିଶ୍ୱାସଘାତକତା କଲେ– ସେ ସ୍ତ୍ରୀ ହେବାକୁ ଅଯୋଗ୍ୟ। ମାନିଜେ ବାଇଜୁନ୍‌ଙ୍କର ସବୁ ଗାଳି, ସବୁ ରାଗକୁ ସହିନେଲେ। ସେ ବାଇଜୁନ୍‌ଙ୍କ ପାଦ ଧରି, ଖାଲି ଲୁହ ଢାଳି କହୁଥିଲେ– ''ମୋର ଭୁଲ ହେଇଚି। ତମେ ମତେ କ୍ଷମା କର ବା ନକର, ମୁଁ ଭୁଲ ମାନୁଚି। ତମକୁ ମୁଁ ପାରସ୍ୟ ଛାଡ଼ିପାରିଲିନି। ତମେ ସେ ଦେଶକୁ ଯାଇ କ'ଣ

ଆଉ ଫେରିଆସିଥାଆନ୍ତ ? ତମେ କ'ଣ ସତରେ ମତେ ମନେରଖିଥାଆନ୍ତ ? ଏଇଥିପାଇଁ ମୁଁ ତୁମକୁ ଛାଡ଼ିପାରିଲିନି । ତମ ବିନା ମୁଁ ବଞ୍ଚିପାରିବିନି । ସେଇଥିପାଇଁ . . .'' ମାନିଜେ ଖାଲି କାନ୍ଦୁଥିଲେ; ଆଉ ତାଙ୍କର ରୂପ ଆହୁରି ଆହୁରି ଝଟକୁଥାଏ ।

ତେବେ ବାଇଜୁନ୍‌ଙ୍କ ବିରକ୍ତ ହେବାର ବହୁତ କାରଣ ଥିଲା । ସେ ଜାଣିଥିଲେ, ମାନିଜେଙ୍କ ବାବା ତାଙ୍କୁ ସହିପାରିବେନି । ସତକୁ ସତ ସେଇଆ ହେଲା । ଆଫ୍ରାସିୟାବ୍ ଯେମିତି ଶୁଣିଲେ ତାଙ୍କ ଝିଅ ନିଜେ ଜଣେ ପାରସ୍ୟ ଲୋକଙ୍କୁ ବରଣ କରିଛନ୍ତି, ସେ ରାଗରେ ଖାଲି ଜଳିଲେ । ସେ ଅନ୍ଧ ହେଇଗଲେ । ଭୁଲିଗଲେ ସକଳ ଦୟାମାୟା । ସେ ପଠାଇଲେ ତାଙ୍କର ସୈନ୍ୟମାନଙ୍କୁ । ସେମାନେ ବାଇଜୁନ୍‌ଙ୍କୁ ଶିକୁଳିରେ ବାନ୍ଧିପକାଇଲେ । ଟାଣି ଟାଣି ନେଲେ ସମ୍ରାଟ୍‌ଙ୍କ ଆଗକୁ । ଆଫ୍ରାସିୟାବ୍‌ଙ୍କ ରାଗ ଆଉ ସମ୍ଭଳା ନଯାଏ ।

ସେ ତମ୍ପ ସାପ ପରି ଫଁ ଫଁ ହୋଇ ପାଟିକଲେ, ''ଆରେ . . . ଆରେ କୁକୁର, ତୋ' ପୂର୍ବପୁରୁଷେ ଥିଲେ ଶିଆଳ ! ତୁ'ଟା ମଣିଷ ହେଲୁ କେବେ ରେ ? ତୁ'ଟା କ'ଣ ବୋକା ? ତୁ କ'ଣ ଜାଣିନୁ ଯେ, ତମର ସେଇ ଅଭିଶପ୍ତ ଦେଶ ପାରସ୍ୟର ସଭିଏଁ ମୋର ଶତ୍ରୁ ! ତମ ଦେଶର ସମସ୍ତଙ୍କୁ ମୁଁ କୁକୁର ପରି ହାଣେ ରେ ଟୋକା ! କି ଦୁଃସାହସ . . . କି ଆସ୍ପର୍ଦ୍ଧା ତୋହର ! ଜାଣୁ ଜାଣୁ ନାଗସାପର ଲାଞ୍ଜରେ ହାତ ତୁ ମାରିଲୁ ରେ ! ତୋ'ର ରକ୍ଷା ନାଇଁ । ତିଆର ହୋଇଯା'— ତିଆର ହୋଇଯା ! ତୁ କୁକୁର ବିଲୁଆ ପରି ମରିବୁ ରେ ! ମୋ' କୁଳର ଚନ୍ଦ୍ରମାକୁ ତୁ ଛୁଇଁଲୁ; ଛୁଇଁଲୁ ତୋର ପାପହାତରେ ! ତୋତେ କେହି ରଖିପାରିବେନି ।''

ବାଇଜୁନ୍ ଏ ସବୁ ଶୁଣିଲେ । ସେ ଯେକୌଣସି ମୁହୂର୍ତ୍ତରେ ମରିଯାଇପାରନ୍ତି । କିନ୍ତୁ ମରଣକୁ ସେ ଡରନ୍ତିନି; ସେ ଥିଲେ ଭୟଶୂନ୍ୟ । କହିଲେ, ''ମୋତେ ମାରିଦେବା ଗୋଟାଏ ବଡ଼ କଥା ନୁହେଁ । ସେଥିରେ ସେମିତି କିଛି ଗୌରବ ବି ନାହିଁ । ମାତ୍ର ମନେ ଥାଏ ଯେପରି . . . ମୁଁ ରୁସ୍ତମ୍‌ଙ୍କ ବଂଶରେ ଜନ୍ମ ନେଇଚି । ରୁସ୍ତମ୍ ମୋ' ମୃତ୍ୟୁର ପ୍ରତିଶୋଧ ନେବେ । ସେଥକୁ ବି ତିଆର ଥିବା ଦରକାର ।''

ଆଫ୍ରାସିୟାବ୍ ଏକଥା ଶୁଣିଲେ ତ ଆହୁରି ରାଗରେ ଜଳିଲେ। ବୀର ରୁସ୍ତମ୍ ଥିଲେ ତାଙ୍କର ସବୁଠୁ ବଡ଼ ବଇରୀ। ସେ ତାଙ୍କର ଘାତକମାନଙ୍କୁ ଡାକି କହିଲେ, ''ଯାଅ ରେ ଘାତକମାନେ! ଆମ ଉଆସର ସାମନାରେ ଅଛି ଯୋଉ ବଡ଼ ଗଛଟା, ତା'ରି ଡାଳରେ ଝୁଲାଇଦିଅ ଏ କୁକୁରଛୁଆଟାକୁ। ମୋତେ ରୁସ୍ତମ୍ ଦେଖାଉଚି! ହା ରେ . . . ଚୋରର ମୁହଁ ଟାଣ।''

ଘାତକମାନେ ଧାଇଁଆସିଲେ। ଠିକ୍ ସେହି ସମୟରେ ଆଫ୍ରାସିୟାବ୍‌ଙ୍କ ରାଜସଭାର ଜଣେ ବୁଢ଼ା ପାରିଷଦ ଉଠିପଡ଼ି କହିଲେ, ''ରୁହ . . . ରୁହ ରେ ଘାତକମାନେ, କ୍ଷଣେ ତୁମ୍ଭେମାନେ ଅଟକିଯାଅ —!''

ଘାତକମାନେ ଯେ ଯେଉଁଠି ଥିଲେ ମନ୍ତ୍ର ଫୁଙ୍କିଲା ପରି ସ୍ଥିର ହୋଇଗଲେ।

ସେ କହିଲେ, ''ସମ୍ରାଟ୍ ମହାଭାଗ, ଆପଣ ଯାହା କରୁଚନ୍ତି ଠିକ୍ କରୁଚନ୍ତି। ଆପଣଙ୍କ ରାଗିବାଟା ନ୍ୟାୟୋଚିତ। ମାତ୍ର ମୋ' ଛୋଟ ବୋଲି ମାନନ୍ତୁ। ତୁରାନ୍‌ରେ ଏବେ ସମସ୍ତେ ସୁଖରେ ଅଛନ୍ତି; ଅଛନ୍ତି ଶାନ୍ତିରେ। ଧନରେ ଦେଶ ଫାଟିଯାଉଚି। ସେ ପରିସ୍ଥିତିରେ ଆପଣ ଏ ଯୁବକଙ୍କୁ ମାରିଦେଲେ ପାରସ୍ୟ କ'ଣ ନୀରବରେ ରହିବ? ମହାବୀର ରୁସ୍ତମ୍ ଚୁପ୍ ରହିବେ କି? ପୃଥିବୀରେ ତାଙ୍କ ପରି ବୀର ଆଉ ନାହାନ୍ତି। ସିଏ ଯେତେବେଳେ ପାରସ୍ୟର ବିଶାଳ ସେନାବାହିନୀ ନେଇ ଆସିବେ, ଆମ ଭିତରେ କିଏ ଅଛି, ଯେ କି ରୁସ୍ତମ୍‌ଙ୍କ ସଙ୍ଗେ ଲଢ଼ିପାରିବ? ଆମ ହାରିବା କି ଜିତିବା ତ ବହୁତ ପଛର କଥା — ଆଗେ ସେମାନେ ତ ଆଉ ଉପରେ ଅତ୍ୟାଚାର କରିବେ। ବିଚରା ନିରୀହ ପ୍ରଜା କଷ୍ଟ ପାଇବେ। ସାରା ଦେଶ କଷ୍ଟ ପାଇବ। ତେଣୁ ଆମ୍ଭମାନଙ୍କର ଗୁହାରି — ଆପଣ ଏ ଯୁବକଙ୍କୁ ମାରନ୍ତୁନି।''

ଏଥିରେ ଆଫ୍ରାସିୟାବ୍‌ଙ୍କ ମୁଣ୍ଡକୁ ଟିକେ ଚେତା ଆସିଲା। ସେ ବାଇଜୁନ୍‌ଙ୍କୁ ମାରିବା କଥା ଆଉ ଭାବିଲେନି। ସେ ଠିକ୍ କଲେ, ତାହାଙ୍କୁ ବନ୍ଦୀ କରିବେ — ବନ୍ଦିଶାଳାରେ ନିର୍ଯାତିତ କରି ମାରିବେ। ସେ କହିଲେ, ''ଆଚ୍ଛା, ତାହାଇ ହେବ। କିନ୍ତୁ ମୁଁ ଏଇ ସୈତାନକୁ

ଠିକ୍ କରିଦେବି । ଏହାକୁ ବାନ୍ଧିବ ଠିକ୍ ଭାବେ । ତା' ମୁଣ୍ଡ ତଳକୁ ଝୁଲାଇ ଦେବ । ତା' ଗୋଡ଼ଟିମାନ ଉପରେ ରହିବ ବନ୍ଧା; ଝୁଲିବ ମୁଣ୍ଡ । ସେ ଚନ୍ଦ୍ରକୁ କି ସୂର୍ଯ୍ୟକୁ ଦେଖି ପାରିବନି । ତା' ଦୁନିଆଁ ହେବ ଅନ୍ଧାରର ଇଲାକା । ଗୋଟାଏ ଗାତ ଭିତରେ ଏମିତି ତାକୁ ଝୁଲାଅ । ଏଣେ ରାକ୍ଷସମାନଙ୍କୁ ଆଦେଶ ଦିଅ, ସେଇ ଗାତ ଉପରେ ପାହାଡ଼ ପରି ବଡ଼ ବଡ଼ ପଥର ଜମାକରିବେ ।

ଆଫ୍ରାସିୟାବ୍ ତାଙ୍କ ଝିଅ ମାନିଜେଙ୍କ ପ୍ରତି ବି ବଡ଼ ନିଷ୍ଠୁର ହୋଇଯାଇଥିଲେ । ସେ ତାଙ୍କ ପାଇଁ ବି କଠିନ ଦଣ୍ଡର ବ୍ୟବସ୍ଥା କଲେ – ସେ ବି ତାଙ୍କର ସ୍ୱାମୀଙ୍କ ସହ ରହିବେ । ମାନିଜେଙ୍କ ସଙ୍ଗିନୀମାନେ ରାଜାଙ୍କୁ ବହୁ ଅନୁନୟ-ବିନୟ କଲେ । ରାଜାଙ୍କର ହୃଦୟ ଟିକେ ବଦଳିଲା । ସେ କହିଲେ, "ଆଚ୍ଛା, ମାନିଜେର ଦଣ୍ଡ ଟିକେ କମ୍ କରିଦେବି । ତା' ଦିହରୁ ସବୁ ଅଳଙ୍କାର କାଢ଼ିନିଆଯିବ । ସିଏ ବଞ୍ଚିବ ଏ ଦେଶର ସାଧାରଣ ବାଳିକାଟି ପରି । ସେ ବାଇଜୁନ୍ ପାଖରେ ରହିବ । ତା'ହେଲେ, ସେ ଦିହେଁ ବୁଝିପାରିବେ ଏମିତି ଦୋଷ କଲେ ଦଣ୍ଡ କଅଣ ହୁଏ ? ତା'ଛଡ଼ା ବାଇଜୁନ୍ ସେପାଖେ କଷ୍ଟ ପାଇ ମରୁଥିବ ଓ ଏପାଖେ ଏ ଚଣ୍ଡାଳୀ ସେଇ କଷ୍ଟକୁ ଅନୁଭବ କରୁଥିବ । ତା'ପାଇଁ ଏ ବେଶ୍ ଭଲ ଦଣ୍ଡ ହେବ ।"

ଆଫ୍ରାସିୟାବ୍‌ଙ୍କ କହିବା ଅନୁସାରେ ସାଙ୍ଗେ ସାଙ୍ଗେ କାମ ଚାଲିଲା । ଅଳ୍ପ ସମୟ ପରେ ବିଚରା ବାଇଜୁନ୍ ସେଇ ଅନ୍ଧକାରମୟ ଗାତ ଭିତରେ ବନ୍ଧାହେଲେ । ତାଙ୍କ ଗାତ ପାଖରେ ଥାଆନ୍ତି ମାନିଜେ । ସେ ପଥର ସେପାରୁ ସ୍ୱାମୀଙ୍କି ନାନା କଥା କହି ପ୍ରବୋଧୁ ଥାଆନ୍ତି । ଭାଗ୍ୟକୁ ସେ ପଥର ଭିତରେ ଗୋଟାଏ କଣା ଥାଏ । ସେଇ କଣାବାଟେ ସେ ବାଇଜୁନ୍‌ଙ୍କୁ ଖାଦ୍ୟ ବଢ଼ାଇଦିଅନ୍ତି । ବାଇଜୁନ୍ ଏମିତି ଭାବେ ବଞ୍ଚିରହିଲେ ।

ଏଣେ ଜାର୍ଜିନ୍ ଫେରିଲେ ପାରସ୍ୟକୁ । ତାଙ୍କ ମନ ଭିତର ଖୁସିରେ ପୂରିଯାଇଥାଏ । ସମ୍ରାଟ୍ ପଚାରିଲେ, "ବାଇଜୁନ୍ କାହାନ୍ତି ?" ଜାର୍ଜିନ୍ ଖାଲିମିଛଗୁଡ଼ିଏ ଯୋଡ଼ିଯାଡ଼ି କହିଲେ, "ଶାହାନଶାହ, ଆମେ ଆସୁଥିବାବେଳେ ବାଟରେ ଭୀଷଣ ଝଡ଼ତୋଫାନ୍ ହେଲା । ସେଥିରେ

ଯିଏ ଯୁଆଡ଼େ ଅଲଗା ଅଲଗା ହୋଇଗଲୁ। ବାଇଜୁନ୍ ତା' ଭିତରେ କୋଉଠି ହଜିଗଲେ। ତୋଫାନ ବନ୍ଦ ହେଲା। ସୈନ୍ୟମାନଙ୍କୁ ନେଇ ମୁଁ ଖୋଜିଲି। ତାଙ୍କର ଚିହ୍ନବର୍ଣ୍ଣ ପାଇଲିନି। ଖାଲି ପାଇଲି ତାଙ୍କର ଘୋଡ଼ାକୁ। ସେ ଘୋଡ଼ାଟି ପାଗଳପରି ଡେଉଁଥିଲା— ଧାଉଁଥିଲା ଏଣେତେଣେ। ବୋବାଉଥିଲା ଭୀଷଣ ଭାବରେ।

ଜାର୍ଜିନ୍ ଏ ସବୁ କହିବାପାଇଁ ଆଗରୁ ଭାବିସାରିଥିଲେ। ସିଏ ଭାବୁଥିଲେ ଅସଲ କଥା କହିଲେ, ସମ୍ରାଟ୍ ତାଙ୍କ ଉପରେ ବିରକ୍ତ ହେବେ। ବାଇଜୁନ୍‌ଙ୍କୁ ଉଦ୍ଧାର କରି ନ ଆଣିବାରୁ ତାହାଙ୍କୁ ଦୋଷୀ କରିବେ। ଆଉ ଉଦ୍ଧାର କରିବା ପାଇଁ ପଠାଇପାରନ୍ତି ବି। ମାତ୍ର ସବୁଠୁ ବଡ଼ କଥାଟି ସେ ଭୁଲିଯାଇଥିଲେ। ସମ୍ରାଟ୍ କାଇଖସ୍ରୁଙ୍କ ପାଖରେ ଥାଏ ଗୋଟିଏ କୁହୁକ ପିଆଲା। ସେଥିରେ ସେ ଦୁନିଆର ସବୁସ୍ଥାନ, ସବୁଲୋକ, ସବୁକଥା ଦେଖିପାରନ୍ତି। ଏଇ ପିଆଲାଟି ଥିଲା ରାଜା ଜେମ୍‌ଶେଦ୍‌ଙ୍କର। ଜେମ୍‌ଶେଦ୍‌ଙ୍କ ପାଇଁ ରାକ୍ଷସ ଗୁଣୀମାନେ ତିଆରି କରିଥିଲେ।

ଜାର୍ଜିନ୍‌ଙ୍କ କଥା ଶୁଣିଲେ ସମ୍ରାଟ୍। ତାଙ୍କ ମନଟା ଖରାପ ହେଇଗଲା। ବାଇଜୁନ୍‌ଙ୍କ ଦୁର୍ଦ୍ଦଶା କଥା ଶୁଣି ସେ ବ୍ୟସ୍ତ ହେଇଗଲେ। ତାଙ୍କର ଗୁଣୀମାନଙ୍କୁ ସେ ଡକାଇଲେ। ସେମାନଙ୍କୁ ଆଦେଶ ଦେଲେ, "ଆପଣମାନଙ୍କର ସମସ୍ତ ମନ୍ତ୍ରଶକ୍ତି ଲଗାନ୍ତୁ। ଏ ପିଆଲାରେ ସେ ମନ୍ତ୍ରକୁ ପ୍ରୟୋଗ କରନ୍ତୁ। ମୁଁ ବାଇଜୁନ୍‌ଙ୍କୁ ଦେଖିବାକୁ ଚାହେଁ।"

ଆଉ ସମ୍ରାଟ୍ ଅଳ୍ପ ସମୟ ପରେ ସବୁକଥା ଦେଖିପାରିଲେ। ବାଇଜୁନ୍ କି କଷ୍ଟ ପାଉଚନ୍ତି। ତାଙ୍କ ପାଖରେ କାନ୍ଦି କାନ୍ଦି ବୁଲୁଚନ୍ତି ମାନିଜେ। ପାରସ୍ୟର ଦରବାର ଏ ଖବର ଜାଣିଲା। ସଭିଏଁ ଖୁସି ହେଇଗଲେ। ଯାହାହେଉ, ତାଙ୍କ ଦେଶର ଏଇ ମହାନ୍ ବୀର ଜୀବନରେ ଅଛନ୍ତି।

ସମ୍ରାଟ୍ ରାଗି ଉଠିଲେ। ସେ ସନ୍ଦେହ କଲେ . . . ଆଉ ଠିକ୍‌ଭାବେ ସନ୍ଦେହ କଲେ ଯେ ଜାର୍ଜିନ୍ ଏ କାମରେ କିଛିଟା ଦାୟୀ। ସେ ଆଦେଶ ଦେଲେ ଗୋଟାଏ ଅନ୍ଧାର ଗୁହାରେ ବନ୍ଦୀ ରହିବେ ଜାର୍ଜିନ୍। ବାଇଜୁନ୍‌ଙ୍କୁ ଉଦ୍ଧାର କରିସାରିଲାପରେ ଏହାଙ୍କୁ ମୁକ୍ତ କରାଯିବ।

ସମ୍ରାଟ୍ ରୁସ୍ତମ୍‌ଙ୍କୁ ଡକାଇପଠାଇଲେ। ତାଙ୍କୁ କହିଲେ, ''ପାରସ୍ୟର ଗୌରବ ରୁସ୍ତମ୍, ଆପଣ ବୀର ବାଇଜୁନ୍‌ଙ୍କୁ ଆଣି ଆମକୁ ଦିଅନ୍ତୁ। ଆପଣଙ୍କୁ ସାହାଯ୍ୟ କରିବାକୁ ସମଗ୍ର ପାରସ୍ୟ-ବାହିନୀ ତିଆର ଅଛନ୍ତି।''

ରୁସ୍ତମ୍ କହିଲେ, ''ଶାହାନ୍‌ଶାହ ବ୍ୟସ୍ତ ହୁଅନ୍ତୁନି। ବାଇଜୁନଙ୍କୁ ମୁଁ ଯାଇ ଉଦ୍ଧାର କରି ଆଣିବି। ତେବେ, ମୁଁ ବଛା ବଛା ହଜାରେ ଲଢୁଆ ବୀରଙ୍କୁ ନେବି। ସେମାନେ ଯିବେ ଛଦ୍ମବେଶରେ। ଆମର ଓଟ ଯିବେ। ସେ ଓଟରେ ଆମେ ନେବୁ ଶିଲକ୍, କାର୍ପେଟ୍, ଅଳଙ୍କାର ଆଦି। ଆମେ ଯିବୁ ବ୍ୟବସାୟୀ ଭାବରେ।''

ସମ୍ରାଟ୍ ଏକଥାରେ ରାଜିହେଲେ। ରୁସ୍ତମ୍‌ଙ୍କ କଥା ଅନୁସାରେ ସବୁ ବ୍ୟବସ୍ଥା ଠିକ୍‌ଠାକ୍ ହେଇଗଲା। ସେମାନେ ଓଟମାନଙ୍କୁ ନେଇ ଆଫ୍ରାସିୟାବ୍‌ଙ୍କ ମୁଲକକୁ ଚାଲିଲେ। ସେମାନେ ତୁରାନ୍‌ରେ ପହଞ୍ଚିଲେ। ସେ ଦେଶର ଲୋକେ ଏ ପ୍ରକାର ବେପାରୀ ଆଉ ଏତେ ଏତେ ସୁନ୍ଦର ପଣ୍ୟ ଜିନିଷ ଆଗରୁ କେବେ ଦେଖିନଥିଲେ। ସେ ଜିନିଷ କିଣିବାକୁ ଲୋକେ ବାଦ୍‌ବୁଦିଆ ଲଗାଇଲେ। ବଡ଼ ଭିଡ଼ ଲାଗିଗଲା।

ମାନିଜେ ଏକଥା ଶୁଣିଲେ। ତାଙ୍କ ମନରେ ଅନେକ କଳ୍ପନା ଖେଳିଗଲା। ସେ ନିଜେ ସୁବିଧା ଖୋଜି ବେପାରୀମାନଙ୍କ ମୁଖିଆଙ୍କ ସହିତ କଥା ହେବାକୁ ଚାହୁଁଥିଲେ। ସେପରି ସୁବିଧା ବି ପାଇଲେ। ସେ ମୁଖିଆବେପାରୀଙ୍କି ଭେଟିଲେ। ଏ ଥିଲେ ରୁସ୍ତମ୍ ନିଜେ। ରାଜଜେମା ପଚାରିଲେ, ''କହନ୍ତୁ, ଆପଣଙ୍କ ଦେଶର ଜଣେ ବଡ଼ ବୀର ଏ ଦେଶରେ ବନ୍ଦୀ ଅଛନ୍ତି ନା! ଏ କଥା ଆପଣଙ୍କ ସମ୍ରାଟ୍ ଜାଣନ୍ତିତ।''

ରୁସ୍ତମ୍ ତାଙ୍କର କୌଶଳଟିକି ଏତେ ବେଗି ଜଣାଇ ଦେବାକୁ ଚାହୁଁ ନଥିଲେ। ସେ କହିଲେ, ''ଦେଖ ଝିଅ, ମୁଁ ଜଣେ ବେପାରୀ। ଆମେ ସବୁବେଳେ ଜିନିଷପାତି କିଣାବିକାରେ ଲାଗିଥାଉ। କିଏ ବନ୍ଦୀ ହେଲା ନହେଲା, ଆମେ ଜାଣିବୁ କେମିତି। ପୁଣି ରାଜା-ସମ୍ରାଟ୍‌ମାନଙ୍କ କଥା। ତାଙ୍କ ଦରବାର କଥାରେ ଆମର କ'ଣ ଯାଏ-ଆସେ। ଆମ ବେପାର ଭଲ ତ, ଆମେ ଭଲ। ତା'ଛଡ଼ା ତମେ ଯୋଉ ବାଇଜୁନ୍ କଥା କହୁଚ, ମୁଁ ସେପରି ନାଁ ତ ମୋ ଦେଶରେ କେବେ ଶୁଣିନି।''

ଏଥିରେ ମାନିଜେଙ୍କ ସାରା ହୃଦୟ ଫାଟିଗଲା ପରି ମନେହେଲା। ତାଙ୍କ ଆଖିରୁ ଧାର ଧାର ହେଇ ବହିଗଲା ଅଜସ୍ର ଲୁହଧାର। ସେ ଦୁଃଖରେ ପ୍ରାୟ ଭାଙ୍ଗିପଡ଼ିଲା ପରି ଜଣାଗଲା।

ରୁସ୍ତମ୍ ଏକଥା ଦେଖି କହିଲେ, ''ଦେଖୁଚି ଝିଅ, ତମେ କୌଣସି ବଡ଼ ବିପଦରେ ପଡ଼ିଚ। ମୋତେ ତମର ଦୁଃଖ କଥା କୁହ। ମୁଁ ବୀର ନୁହେଁ; ନୁହେଁ ସମ୍ରାଟ୍‌ଙ୍କ ସଭାର ଲୋକ। ମାତ୍ର ମୋର ବିଶ୍ୱାସ ଅଛି, ତମକୁ ମୁଁ ସାହାଯ୍ୟ କରିପାରିବି।''

ରୁସ୍ତମ୍‌ଙ୍କ ଏଇ ଆଶ୍ୱାସନାରେ ମାନିଜେ ନିଜକୁ ଖୋଲିଦେଲେ। ସେ କାନ୍ଦି କାନ୍ଦି ତାଙ୍କର ସବୁକଥା କହିଗଲେ। ଶେଷକୁ କହିଲେ, ''ମୋ'ରି ଦୋଷରୁ ସିଏ ଆଜି ଏ ଯମ-ଯନ୍ତ୍ରଣା ଭୋଗୁଛନ୍ତି। ଆପଣ ତ କହିଲେ, ସାହାଯ୍ୟ କରିବେ, ଏବେ ମୋତେ ଆଉ ବାଇଜୁନ୍‌ଙ୍କୁ ରକ୍ଷାକରନ୍ତୁ।''

ରୁସ୍ତମ୍ ଏ ସବୁ ଶୁଣିସାରି ମାନିଜେଙ୍କୁ ଗୋଟାଏ ଭଜାହୋଇଥିବା କୁକୁଡ଼ା ଦେଲେ। ସେଇ କୁକୁଡ଼ା ଭିତରେ ଥାଏ ରୁସ୍ତମ୍‌ଙ୍କ ଚିହ୍ନ– ତାଙ୍କର ମୁଦି। ବାଇଜୁନ୍ ଗାତ ଭିତରେ ପାଇଲେ ମୁଦିଟି। ସେ ଜାଣିଗଲେ ସବୁକଥା। ସଙ୍ଗେ ସଙ୍ଗେ ସେ ଆନନ୍ଦରେ ପାଟିକରି ଉଠିଲେ। ମାନିଜେ ପଥରର ସେଇ କଣାବାଟେ ବାଇଜୁନ୍‌ଙ୍କୁ ଦେଖୁଥାଆନ୍ତି। ସେ ଖୁସି ହେବାର କାରଣ ମାନିଜେ ବୁଝିପାରିଲେନି। ପଚାରିଲେ, ''ହଠାତ୍ ଏମିତି ଖୁସି ଯେ ! କ'ଣ ହେଲା କି ?''

—''ମାନିଜେ, ଯିଏ ତମକୁ ଏ କୁକୁଡ଼ା ଦେଲେ . . .''

—''ବେପାରୀମାନଙ୍କ ମୁଖିଆ . . . !''

—''ନା ହେ ନା, ସିଏ ରୁସ୍ତମ୍ !''

—''ଆଚ୍ଛା, ତେବେ ତ ଆମର ଭାଗ୍ୟ !''

—''ଏବେ ଯାଅ ତାଙ୍କ ପାଖକୁ। ପଚାର କ'ଣ କରିବାକୁହେବ ?''

ମାନିଜେ ଦଉଡ଼ିଲେ ରୁସ୍ତମ୍‌ଙ୍କ ପାଖକୁ। ରୁସ୍ତମ୍ କହିଲେ, ''ଦେଖ ଝିଅ, ଖୁବ୍ ସାବଧାନରେ କାମ କରିବ। ଯୋଉଠି ବାଇଜୁନ୍ ବନ୍ଦୀ ଅଛନ୍ତି, ତା'ପାଖରେ ବତିଟିଏ ଜାଳିଦେବ। ଆମେ ଠିକ୍ ଠଉରାଇ ପାରିବୁ ଓ ସେ ଜାଗାକୁ ଯିବୁ। ଆଉ ଦେଖିବ, ସେଇ ରାକ୍ଷସକୁ।

ତା' ବାପାକୁ ମୁଁ ମାରିଦେଇଥିଲି ନା ! ସିଏ ମୋ' ଉପରେ ରାଗିଚି।''

ମାନିଜେ ବେଗି ବେଗି ପାଦ ପକାଇ ଫେରିଆସିଲେ। ସେ ଗଦାଏ ଶୁଖିଲା କାଠ ଜମାକଲେ ଓ ନିଆଁ ଜାଳିଲେ। ସେ ନିଆଁ ପାଖରେ ଜଗିବସିଥାଆନ୍ତି। ମନରେ ତାଙ୍କର ଅନେକ ଆଶଙ୍କା; ଅନେକ ଭୟ ! ସତେ କ'ଣ ରୁସ୍ତମ୍ ସେଠାକୁ ଆସିବେ। ସତେ ବାଇଜୁନ୍ ରକ୍ଷାପାଇବେ ! ଏ ସବୁ ଚିନ୍ତାରେ ମାନିଜେଙ୍କ ଛାତି ଥରିଉଠୁଥାଏ। ହଠାତ୍ ରୁସ୍ତମ୍ ଆଉ ତାଙ୍କ ସୈନ୍ୟମାନଙ୍କର ପାଦଶବ୍ଦ ଶୁଣିପାରିଲେ।

ରାକ୍ଷସ ଆଉ ପାରସିକମାନଙ୍କ ଭିତରେ ଲଢ଼େଇ ଚାଲିଲା। ଭୀଷଣ ଲଢ଼େଇ। ମାନିଜେ ତ୍ରସ୍ତ ହେଇ ଦେଖୁଥାଆନ୍ତି। ସନ୍ଦେହ ହେଉଥାଏ, ବାଇଜୁନ୍ ବୋଧହୁଏ ସେଇ ଅନ୍ଧାରି ଗାତରେ ରହିଯିବେ– ତାଙ୍କୁ ଉଦ୍ଧାର କରାଯାଇ ପାରିବନି। କେତେବେଳେ ଭାବନ୍ତି ପୃଥିବୀବିଜେତା ରୁସ୍ତମ୍– ଏ କାମରେ ହାରିଯିବେନି।

ହଠାତ୍ ଗୋଟାଏ ଭୀଷଣ ଗର୍ଜନ ଶୁଭିଲା। ଯୁଦ୍ଧକ୍ଷେତ୍ରକୁ ଡେଇଁପଡ଼ିଲା ଅସୁର ଦଳପତି। ତା'ମୁଣ୍ଡର ଗୋଟିଆ ଗୋଟିଆ ଶିଙ୍ଗ ଦି'ଟା ରାତିରେ ବି ଚକ୍‌ଚକ୍ କରୁଥାଏ। ସେ ଚିତ୍କାର କଲା, ''ଆରେ ଆରେ ମୋ' ବାପାର ହତ୍ୟାକାରୀ, ଆ... ଆ ଏଥର। ତୋ' ଜୀବନର ଶେଷକାଳ ଆସିଗଲାରେ ! ତୋତେ ମୁଁ ମୃତ୍ୟୁପୁରକୁ ପଠାଇଦେବି।'' ସେ ରାକ୍ଷସ ଉପାଡ଼ି ଆଣିଲା ଗୋଟେ ବଡ଼ଗଛ ଓ ସେଇଟାକୁ ଉଞ୍ଚାଇ ଧାଇଁଲା ରୁସ୍ତମ୍‌ଙ୍କ ଆଡ଼କୁ।

ମାନିଜେ ଏତେ ଡରିଗଲେ ଯେ, ସେ କାନ୍ଦିଉଠିଲେ। ସେ ଦେବତାମାନଙ୍କୁ ପ୍ରାର୍ଥନାକଲେ ରୁସ୍ତମ୍‌ଙ୍କୁ ସାହା ହେବାକୁ।

ରାକ୍ଷସ ଖୁବ୍ ଚାଲାକିର ସହ ଲଢୁଥାଏ। ସିଏ କେତେବେଳେ ଉଭେଇ ଯାଉଥାଏ, କେତେବେଳେ ପୁଣି ଦେଖାଦେଇ ଯୁଝୁଥାଏ। ଯେତେବେଳେ ସେ ହାରିବା ନିଶ୍ଚିତ ବୋଲି ଜାଣେ, ସେତେବେଳେ ସେ କୋଉଠି ଲୁଚିଯାଏ। ଶେଷକୁ ରାକ୍ଷସ ରାଗରେ ଅନେକ କଥା ଭୁଲିଗଲା। ସେ ନିଜକୁ ବେଶୀ ସମୟ ଲୁଚାଇପାରିଲାନି। ସେ ଗୋଟାଏ ମସ୍ତବଡ଼ ଗଛ ଧରି ଦଉଡ଼ି ଆସିଲା। ରୁସ୍ତମ୍ ଚାଲାଖି କରି ଗୋଟାଏ ଦିଗକୁ ଘୁଞ୍ଚିଗଲା। ରାକ୍ଷସ ତାଙ୍କ ପାଖଦେଇ ଚାଲିଗଲା।

ରୁସ୍ତମ୍ ସେତିକିବେଳେ ତାଙ୍କ ତଲୁଆରଟା ରାକ୍ଷସ ଦେହରେ ଭୁଷିଦେଲେ। ଗୋଟାଏ ବିରାଟ ଚିତ୍କାରକରି ରାକ୍ଷସଟି ଛଟପଟ ହେଇ ତଳେ ପଡ଼ିଗଲା। ପାରସ୍ୟ ବୀରମାନେ ରାକ୍ଷସମାନଙ୍କୁ ଗୋଡ଼ାଇ ମାରିଲେ। ରୁସ୍ତମ୍ ଗାତମୁହଁରୁ ସେଇ ବଡ଼ ପଥରଟାକୁ ଘୁଞ୍ଚାଇଦେଲେ, ଆଉ ତାଙ୍କର ଫାଶକୁ ଗାତଭିତରକୁ ଫିଙ୍ଗିଦେଲେ। ବାଇଜୁନ୍ ଫାଶଟାକୁ ଧରି ଉପରକୁ ଉଠିଆସିଲେ।

ଆଫ୍ରାସିୟାବ୍ ତାଙ୍କ ନଅରରେ ମହାଆରାମରେ ଶୋଇଥିଲେ। ରାତିସାରା ଏତେ ଝଗଡ଼ା, ଏତେ ଲଢ଼େଇ, ସେ କଥା ସେ ଜାଣିନଥିଲେ। ହଠାତ୍ ତାଙ୍କ ଉଆସରେ ପାଟି ଶୁଭିଲା, "ରାଜା ଉଠନ୍ତୁ। ମହାବୀର ରୁସ୍ତମ୍ ଆସିଯାଇଛନ୍ତି। ସିଏ ବାଇଜୁନ୍‌ଙ୍କୁ ଉଦ୍ଧାର କରିସାରିଲେଣି। ବର୍ତ୍ତମାନ ସେ ସମସ୍ତଙ୍କୁ ମାରିବାରେ ଲାଗିଛନ୍ତି।"

ପାରସ୍ୟର ସେଇ ବୀରମାନେ ଆଗରେ ଯାହାକୁ ପାଇଲେ ମାରିଲେ। ବହୁତ ତୁରାନୀବୀର ହାଣଖାଇଲେ। ଆଫ୍ରାସିୟାବ୍ ଦେଖିଲେ ଅବସ୍ଥା ବଡ଼ ସାଙ୍ଘାତିକ। ସେ ଉଆସର ଗୁପ୍ତପଥ ବାଟେ ବାହାରକୁ ଚାଲିଗଲେ। ସେ ତାଙ୍କର ସୈନ୍ୟମାନଙ୍କୁ ଏକତ୍ର କଲେ। ସକାଳୁ ସକାଳୁ ତାଙ୍କର ସୈନ୍ୟମାନେ ହାତ ହତିଆର ଧରି ପାରସିକମାନଙ୍କ ସହିତ ଲଢ଼େଇରେ ଲାଗିଯାଇଥାନ୍ତି।

ପାରସିକମାନେ ଯଦିଓ ମାତ୍ର ହଜାରେ, ରୁସ୍ତମ୍ ସେମାନଙ୍କର ଦଳପତି। ତେଣୁ ସେମାନଙ୍କ ବଳ ଶତଗୁଣ ହୋଇଯାଇଥାଏ। ସେମାନେ ଖୁବ୍ ସାହସର ସହ ଲଢ଼ିଲେ। ତୁରାନୀବୀର ସଂଖ୍ୟାରେ ବହୁତ ଥିଲେ– ତଥାପି ସେମାନେ ପାରସିକମାନଙ୍କ ଆଗରେ ଠିଆ ହେଇ ପାରିଲେନି। ଯୁଦ୍ଧରେ ରୁସ୍ତମ୍‌ଙ୍କର ଜୟ ହେଲା। ତୁରାନୀମାନେ ହାରିଯାଇ ଯିଏ ଯୁଆଡ଼େ ପଳାଇଲେ।

ରୁସ୍ତମ୍ ଆଉ ତାଙ୍କର ସୈନ୍ୟମାନେ ତୁରାନ୍‌ରୁ ବହୁତ ମଣିମାଣିକ୍ୟ ବୋହିଆଣିଲେ। ସେମାନେ ବାଇଜୁନ୍ ଓ ମାନିଜେଙ୍କୁ ସାଥିରେ ନେଇ ଫେରିଲେ ପାରସ୍ୟ। ସମ୍ରାଟ୍ କାଇଖସ୍ରୁ ସେମାନଙ୍କୁ ଆନନ୍ଦ ଓ ଆଗ୍ରହରେ ପାଛୋଟି ନେଲେ। ମହାସମାରୋହରେ ବାଇଜୁନ୍ ଓ ମାନିଜେଙ୍କ ବିବାହ ଉତ୍ସବ ସମ୍ପନ୍ନ ହେଲା।

# ଆଫ୍ରାସିୟାବ୍‌ଙ୍କ ଶେଷଦିନ

ପାରସ୍ୟର ଶତ୍ରୁ ଥିଲେ ଆଫ୍ରାସିୟାବ୍। ସେ ତୁରାନ୍‌ର ରାଜା ଥିଲେ। ସେ ପାରସ୍ୟ ଉପରେ ଅନେକ ଥର ଚଢ଼ାଉ କରିଥିଲେ, ମାତ୍ର ସବୁଥର ହାରିଥିଲେ। ହାରିବାର ଏକମାତ୍ର କାରଣ ଥିଲେ ମହାବୀର ରୁସ୍ତମ୍। ରୁସ୍ତମ୍‌ଙ୍କ ଆଗରେ ତୁରାନ୍‌ର ଜଣେହେଲେ ଠିଆହେଇ ପାରୁନଥିଲେ। ଆଫ୍ରାସିୟାବ୍ ତ ନ୍ୟାୟ ଯୁଦ୍ଧରେ ପାରିଲେନି— ସିଏ ଗୋଟେ ନୂଆ ଫାନ୍ଦ ବସାଇଲେ।

ତାଙ୍କ ରାଇଜରେ ଜଣେ ଖୁବ୍ ସୁନ୍ଦରୀ ସ୍ତ୍ରୀ ଥାଏ। ସେ ନାନା ଗୁଣିଗାରୁଡ଼ିରେ ପ୍ରବୀଣା। ଆଫ୍ରାସିୟାବ୍ ଏହାକୁ ହାତକଲେ। ସେ ସ୍ତ୍ରୀଟି କହିଲା, "ସମ୍ରାଟ୍, ଆପଣ ବେଫିକର୍ ରହନ୍ତୁ। ମୁଁ ରୁସ୍ତମ୍‌ଙ୍କୁ ବାନ୍ଧିଆଣିବି— ଆପଣଙ୍କ ପାଦତଳେ ଖଟାଇବି।"

ଆଫ୍ରିସିୟାବ୍ ଏହା ଶୁଣି ଖୁବ୍ ଖୁସିହେଲେ। ବଳରେ ନହେଲେ କଳରେ ଚେଷ୍ଟା ହେଉ। ଶତ୍ରୁକୁ ସାଧିବାକୁ ହେବ— ସେଠି ଯୋଉ ଉପାୟ ହେଲେ ବି ଚଳିବ। ଏଇ ନୀତି ଆଫ୍ରାସିୟାବ୍‌ଙ୍କୁ ଖୁବ୍ ପୋଷାଏ। ତେଣୁ ସେ ଗୋଟେ ଠିକଣା ଦିନରେ ସେଇ ସ୍ତ୍ରୀଲୋକଟିକି ପଠାଇଦେଲେ ଜାବୁଲିସ୍ଥାନ। ତା' ସହିତ ଥାଆନ୍ତି ପିଲସାମ୍। ପିଲସାମ୍ ତୁରାନ୍‌ର ସବୁଠୁ ବଡ଼ ବୀର। ରଜା ଏ ଦିହିଁଙ୍କ ହାତରେ ଅଜସ୍ର ଧନରତ୍ନ ଦେଲେ।

ସେ ଦିହେଁ ଜାବୁଲିସ୍ଥାନରେ ପହଞ୍ଚି ରୁସ୍ତମ୍‌ଙ୍କ ଉଆସ ପାଖକୁ ଲାଗି ଗୋଟେ ବଡ଼ଘର ଉଭାନେଲେ। ସେମାନେ ନିଜକୁ ବ୍ୟବସାୟୀ ବୋଲି ପରିଚୟ ଦେଲେ। ଜାବୁଲିସ୍ଥାନର ଯେତେ ବଡ଼ବଡ଼ିଆ, ସମସ୍ତଙ୍କ ପାଇଁ ସେମାନଙ୍କ ଘର ଖୋଲାଥାଏ। ସେମାନେ ସେଠି ଖୁବ୍ ଖାଆନ୍ତି ଓ ମଉଜ ମଜଲିସ୍ କରନ୍ତି।

ପାରସ୍ୟର ତିନୋଟି ବଡ଼ ବୀର ଏଇ ପାଲରେ ପଡ଼ିଗଲେ। ସେମାନେ ସେ ସ୍ତ୍ରୀଲୋକଟିର ରୂପ ଦେଖି ଚମତ୍କୃତ ହେଲେ। ସେଠି

ଯଥେଷ୍ଟ ଖିଆପିଆ କଲେ ଓ ଗୀତନାଚ ଉପଭୋଗ କଲେ। ନିଜକୁ ଭୁଲିଲେ। ଏଇ ସୁବିଧାରେ ପିଲସାମ୍ ଏମାନଙ୍କ ହାତଗୋଡ଼ ବାନ୍ଧିଲେ ଓ ଗୋଟାଏ ଅନ୍ଧାରିଆ କୋଠରିରେ ଏମାନଙ୍କୁ ବନ୍ଦୀକରି ରଖିଲେ।

ଏ ଘଟଣାର ଅଳ୍ପଦିନ ପରେ ଏ ବାଟେ ଗଲେ ଜାଲ୍। ଜାଲ୍ ବୀର ରୁସ୍ତମ୍‌ଙ୍କ ବୁଢ଼ା ବାପା। 'ସେଠି କିଏ ଅଛି' ଏହି କୌତୂହଳ ଯୋଗୁଁ ଜାଲ୍ ତା'ଭିତରେ ପ୍ରବେଶ କଲେ। ତାଙ୍କର ଚର୍ଚ୍ଚାପାଇଁ ସେ ତୁରାନୀୟା ସ୍ତ୍ରୀଲୋକଟି ଓ ପିଲସାମ୍ ଲାଗିପଡ଼ିଲେ। ମାତ୍ର ଜାଲ୍‌ଙ୍କ ମନ ଭିତରେ କେବଳ ଜଣଙ୍କର ଛବି ଥିଲା—ସେ ଥିଲା ରୁଦାବେଙ୍କର। ରୁଦାବେ ସେତେବେଳକୁ ଆଉ ଏ ଦୁନିଆରେ ନଥିଲେ। ଅନେକ ଦିନରୁ ସେ ସଂସାର ଛାଡ଼ି, ସ୍ୱାମୀଙ୍କର ସ୍ନେହ-ଶ୍ରଦ୍ଧାକୁ ଦୂରେଇ ଅଜଣାପୁରୀକି ଚାଲିଯାଇଥିଲେ। ଜାଲ୍ ସବୁବେଳେ ରୁଦାବେଙ୍କୁ ମନେପକାଉଥିଲେ।

ସେଇଠି ଜାଲ୍ ଖାଇଲେ, ପିଇଲେ, ଖୁସି ହେଲେ। ତାଙ୍କ ଉପରେ ସେ ସ୍ତ୍ରୀଲୋକଟିର କୌଣସି ଗୁଣିବିଦ୍ୟା କାମ କଲାନି। ସେ ତାକୁ ଧନ୍ୟବାଦ ଦେଇ ଫେରିବାକୁ ବସିଲେ। ଫାଟକ ପାଖରେ ଜଣେ ଲୋକ ତାଙ୍କୁ ସଲାମ୍ ଜଣାଇଲା। ସେ କହିଲା, "ଗରିବମାନଙ୍କ ମାଲିକ, ପଦେ କହନ୍ତି!"

—"କୁହ... କୁହ! ଭୟ ନାହିଁ!"

—"ହଜୁର, ଏଇ ଘରକୁ ଯା' ଆଗରୁ ତିନିଜଣ ପାରସ୍ୟର ସେନାପତି ଆସିଥିଲେ। ସେମାନଙ୍କ ଆସିବା ମୁଁ ଦେଖିଚି। ସେମାନଙ୍କ ଫେରିବା ଦେଖିନି।"

—"ମାନେ...!"

—"ମୁଁ ଜାଣେନି ହଜୁର! ମୋର ଡର ହେଉଚି..."

—"ବେଶ୍... ବେଶ୍! ମୁଁ ସେ କଥା ବୁଝୁଚି।"

ଜାଲ୍ ପଛକୁ ଫେରିଚାହିଁଲେ। କାହିଁ, ସେଠି ତ ସେ କୌଣସି ଲୋକକୁ ଦେଖି ନଥିଲେ। ତେବେ, ପଥର ପାହାଚର— ଗୋଟାଏ ଅଣଓସାରିଆ ସରୁଆ ବାଟ ସେ ଦେଖିଥିଲେ। ସେ ପାଖରେ ଦୁଇ-ତିନିଗୋଟି ମୁକୁଟ ଥିଲା। ସେ ସବୁ ପାରସ୍ୟ ସେନାପତିମାନଙ୍କର

ଥିଲା । ତାଲ୍‌ଙ୍କ ମନରେ ନାନା ସନ୍ଦେହ ଆସିଲା । ତାଲ୍ ଦଉଡ଼ି ଆସିଲେ । କୋଠରିର ଦ୍ୱାରବନ୍ଧ ପାଖରେ ଥିଲା ସେ ସ୍ତ୍ରୀଲୋକଟି । ତାଲ୍‌ଙ୍କୁ ସିଏ ଦେଖିଲା ତ ଜୋର୍‌ରେ ଦଉଡ଼ି ପଳାଇଲା । ସେ ଘର ଭିତରକୁ ପଶିଗଲା । କବାଟ କିଳିଦେଲା । ତାଲ୍ ଛାଡ଼ିଲେନି । ସେ କବାଟ ଉପରେ ଧକ୍‌କା ମାରିଲେ । ଶେଷରେ କବାଟ ଖୋଲିଗଲା । ମାତ୍ର ସେଠି ସେ ସ୍ତ୍ରୀଲୋକ ନଥିଲା । ତା' ବଦଳରେ ସେଠି ଠିଆହୋଇଥିଲେ ପିଲସାମ୍ । ଦୁହିଁଙ୍କ ଭିତରେ ଲଢ଼େଇ ଲାଗିଲା । ଖୁବ୍ ବୁଢ଼ା ହୋଇଥିଲେ ତାଲ୍ । ପିଲସାମ୍‌ଙ୍କ ସହ ଲଢ଼େଇରେ ସେ ପାରି ଉଠି ନ ପାରନ୍ତି ବୋଲି ଭାବିଲା ସେଇ ପାଣିବୁହା ଲୋକଟି । ସେ ଦଉଡ଼ିଲା ରୁସ୍ତମ୍‌ଙ୍କ ପାଖକୁ । ଖବର ପାଇ ରୁସ୍ତମ୍ ସେଠି ଅଳ୍ପ ସମୟମଧ୍ୟରେ ପହଞ୍ଚିଲେ । ପିଲସାମ୍ ରୁସ୍ତମ୍‌ଙ୍କ ତଲୁଆର ମୁହଁରେ ପଡ଼ିଲେ । ତିନିଜଣଯାକ ପାରସିକ ସେନାପତିଙ୍କି ସେ ମୁକୁଳାଇ ଆଣିଲେ ।

ସେ ସ୍ତ୍ରୀଲୋକଟି ଏ ଧସ୍ତାଧସ୍ତି ହଣାକଟା ଭିତରେ ଖସିପଳାଇଗଲା । ସେ ଆଫ୍ରାସିୟାବ୍‌ଙ୍କ ପାଖକୁ ଆଉ ଯିବ କଅଣ— ତାକୁ ଲାଜ ଲାଗିଲା— ଡର ବି ଲାଗିଲା । ତେଣୁ ସେ ଭାରତକୁ ପଳାଇଲା । ସେଠି ଗୋଟାଏ ବଡ଼ ସହରରେ ରହିଲା । ତା'ପାଖରେ ଥାଏ ଅନେକ ଧନରତ୍ନ । ବେଶ ମଉଜରେ ସେ ସେଇ ଅଜଣା ସହରରେ ରହିଥାଏ ।

ଆଫ୍ରାସିୟାବ୍ ଏସବୁ ଖବର ପାଇଲେ । ତାଙ୍କର ସବୁଠୁ ପ୍ରିୟ, ସବୁଠୁ ବଳୁଆ ସେନାପତି ପିଲସାମ୍ ହାଣଖାଇଲେ । ସେଇ ରୁସ୍ତମ୍ ମାରିପକାଇଲା । ରୁସ୍ତମ୍‌ଙ୍କ ବିରୁଦ୍ଧରେ ଯୋଉ ଜାଲ ବିଛାଯାଇଥିଲା, ତାହା କୋଉ କାମକୁ ଆସିଲାନି; ବରଂ ସେ ସବୁ ରୁସ୍ତମ୍ ଜାଣିପକାଇଲେ । ଆଫ୍ରାସିୟାବ୍ ରାଗରେ ତାତିଗଲେ । ସେ ତାଙ୍କର ରତ୍ନଖଚିତ ବିଭିନ୍ନ ଅଳଙ୍କାର ଫିଙ୍ଗା-ଫୋପଡ଼ା କଲେ । ନିଜେ ଖାଇଲେନି । ବଡ଼ ଚିଡ଼ା ହେଇଉଠିଲେ । ଚାକରବାକର କେହି ତାଙ୍କର ପାଖମାଡ଼ିଲେନି— ସଭିଏଁ ଡରିଲେ । ଡରୁଥିଲେ ଯେ, ଯେକୌଣସି ମୁହୂର୍ତ୍ତରେ ସେମାନଙ୍କ ମୁଣ୍ଡକାଟ ହେଇପାରେ ।

ଏମିତି ତିନିଦିନ ଚାଲିଲା । ଆଫ୍ରାସିୟାବ୍ ଏ ଭିତରେ ଖାଉନାହାନ୍ତି । ଶୋଉନାହାନ୍ତି ବି । ସିଏ ଖାଲି ଅସ୍ଥିର ଭାବରେ ତାଙ୍କ କୋଠରିରେ

ଚଲାବୁଲା କରିଛନ୍ତି। କେତେବେଳେ କେମିତି ଅସ୍ପଷ୍ଟ ଭାବରେ ପାଟିକରିଦ୍ୱନ୍ତି। କ'ଣ କ'ଣ କହିଛନ୍ତି। ଉଆସ ମଧ୍ୟରେ ପ୍ରତ୍ୟେକ ଲୋକ ଏ ଭିତରେ ଖାଲି ଭୟରେ ଥରୁଥାନ୍ତି। କୋଉ ମୁହୂର୍ତ୍ତରେ କିଏ ମୃତ୍ୟୁଦେଶକୁ ଡକାହୋଇଯିବ, ଏଇ ଡରରେ ସେମାନେ ଥରୁଥିଲେ।

ଆଫ୍ରାସିୟାବ୍ ତାଙ୍କ ମୁଲକର ସବୁ ଡାକ୍ତର, ସବୁ ଗୁଣୀଙ୍କି ଡକାଇଲେ। ସେମାନେ ସମସ୍ତେ ପିନ୍ଧିଥିଲେ ଲମ୍ବା ପୋଷାକ। ମୁଣ୍ଡରେ ଥିଲା ଧଳା ପଗଡ଼ି। ସମ୍ରାଟ୍ ଗର୍ଜୁଥାନ୍ତି। ଏ ସମସ୍ତେ ମୁହଁ ତଳକୁ ପୋତି ଠିଆ ହେଇ ଥାଆନ୍ତି। ସମ୍ରାଟ୍ ଆଫ୍ରାସିୟାବ୍ କହିଲେ– "ଏଇ ଦେଶ, ଏଇ ତୁରାନ୍ ଆମର କେଡ଼େ ପ୍ରିୟ, ଆପଣମାନେ ଜାଣନ୍ତି। ଆଉ ଜାଣନ୍ତି ଏ ଦେଶର ଜଣେ ଶତ୍ରୁ ଅଛି। ସେ ରୁସ୍ତମ୍। ତା'ରି ବଳରେ ପାରସ୍ୟ ଆମ ଉପରେ ବହୁଥର ଚଢ଼ାଉ କରିଚି। ଆମର ନାମ, ଯଶ, ଯାହାକିଛି ଧୂଳିଧୂସର ହେଇଚି। କେବଳ ସେଇ ଜଣକ ପାଇଁ ଏ ଜାତିର ଇଜ୍ଜତ ଧୂଳିରେ ମିଶିଯାଇଚି।

"ଆପଣମାନଙ୍କୁ ମୁଁ ବର୍ଷ ବର୍ଷ ଧରି ପାଳି ଆସିଚି, ମାନସମ୍ମାନ ଦେଇ ଆସିଚି। ଆଜି ସେଇ ଦିନ ଆସି ପହଞ୍ଚିଚି– ଆପଣମାନେ ସେଇ ଋଣ ପରିଶୋଧ କରନ୍ତୁ। ମୁଁ ଆପଣମାନଙ୍କୁ ଦାନ ଦେବାରେ କୃପଣ ହୋଇନି। ତେଣୁ ଆଶାକରେ, ଆପଣମାନେ ଆପଣମାନଙ୍କ ସମ୍ରାଟ୍‌ଙ୍କୁ ସାହାଯ୍ୟ କରିବାରେ କୌଣସି କୁଣ୍ଠା ପ୍ରକାଶ କରିବେନି।

"ମୁଁ ଆଉ ରୁସ୍ତମ୍‌କୁ ସହିପାରୁନି... ସହିପାରୁନି ତା' ଗର୍ବ। ମୁଁ ଚାହେଁ ଏ କଥାର ଗୋଟାଏ ଶେଷ କିନାରା ହେଇଯାଉ। ହୁଏତ ମୁଁ ଏ ପୃଥିବୀରୁ ବିଦାୟ ନେବି, ନହେଲେ ରୁସ୍ତମ୍ ବିଦାୟ ନେବ। ଆପଣମାନଙ୍କୁ ଅନୁରୋଧ, ଅତି ଶୀଘ୍ର ଆପଣମାନେ ଗ୍ରହମାନଙ୍କର ଚଳାଚଳ ପରୀକ୍ଷା କରନ୍ତୁ। ଅତି ଶୀଘ୍ର ସେ ଦୁଷ୍ଟ କିପରି ମରିବ, ସେ କଥା ଜଣାନ୍ତୁ।"

ଏକଥା କହିସାରି ଆଫ୍ରାସିୟାବ୍ ନୀରବ ରହିଲେ। ସେ ରାଗରେ ଥରୁଥାଆନ୍ତି। ତା'ପରେ ଅଭିମାନ-ଗର୍ବଭରା ମୁଦ୍ରାରେ ସେ ହାତ ହଲାଇ କହିଲେ, "ଯାଆନ୍ତୁ... ଯାଆନ୍ତୁ ଏଥର ଆପଣମାନେ। ଶୀଘ୍ର ତିନିଦିନ ଭିତରେ ଠିକ୍ ଏଇ ସମୟରେ ଏଇଠାରେ ଉପସ୍ଥିତ

ହେବେ। ସେ ସମୟରେ ମୋତେ ନିର୍ଦ୍ଦିଷ୍ଟ କଥାଟି ଜଣାଇବେ।"

ଏ ପଣ୍ଡିତମାନେ ଅନେକ ଥର ଆଫ୍ରାସିୟାବ୍‌ଙ୍କ କୋଷ୍ଠୀ ପରୀକ୍ଷା କରିଛନ୍ତି। ତେଣୁ ଏଥର ଯେ ଆଉ କିଛି ବଦଳିଯିବ, ସେ ପ୍ରକାର କୌଣସି ଚିହ୍ନ ନଥିଲା। ସେମାନେ ଦୁଃଖିତ ହେଲେ। ସେମାନେ ଜାଣିଥିଲେ, ଆଫ୍ରାସିୟାବ୍ ଖୁବ୍ ଶୀଘ୍ର ଗୋଟାଏ ଲଢ଼େଇରେ ହାରିବେ; ଜୀବନରକ୍ଷା ପାଇଁ ପଳାଇବେ; ମାତ୍ର ନିହତ ହେବେ। ଆଉ ରୁସ୍ତମ୍? ରୁସ୍ତମ୍‌ଙ୍କ ଜାତକ ଅନୁସାରେ ସେ ଅନେକ ଦିନ ବଞ୍ଚିବେ ବୋଲି ଜଣାଯାଉଚି। ରୁସ୍ତମ୍ ଅନେକ ମାନସମ୍ମାନ ପାଇବେ। ବହୁ ଧନ-ସମ୍ପଦ ଜମା କରିବେ। ଅବଶ୍ୟ ଜୀବନର ଶେଷ ଆଡ଼କୁ ସେ ଖୁବ୍ ଦୁଃଖ ପାଇବେ ଆଉ ରକ୍ତାକ୍ତ ଯୁଦ୍ଧରେ ମରିବେ।

ତୃତୀୟ ଦିନ ଆସିଗଲା। ସେ ଦିନ ରାତି ନ ପାହିବା ଆଗରୁ ସେହି ପଣ୍ଡିତମାନେ ସମସ୍ତେ ଏକାଠି ହେଲେ। ସେମାନେ ଏକ ଗୁପ୍ତ ଜାଗାରେ ଜମାହେଲେ। ବିଚାରକଲେ, ସତ କହିଲେ, ସେମାନଙ୍କର ରକ୍ଷା ନାହିଁ। ହୁଏତ ସକାଳେ ସକାଳେ ସେମାନଙ୍କ ଭାଗ୍ୟ ନିର୍ଣ୍ଣୀତ ହୋଇଯିବ। ପରଦିନ ସକାଳେ ଦେଖିବାକୁ ଜଣେ କେହି ବି ରହିବେନି। ସେମାନେ ଆଶା-ହତାଶର ଲହରୀ ଭିତରେ ଉବୁଟୁବୁ ହେଲେ। କ'ଣ କଲେ ସେମାନେ ରକ୍ଷା ପାଇବେ! ଆହେ, ଆପେ ବଞ୍ଚିଲେ ତ ବାପ ବଞ୍ଚିବେ, ବଞ୍ଚିବ ଏ ଦୁନିଆ।

ସେମାନଙ୍କ ଭିତରୁ ଜଣେ କହିଲେ, "ଆପଣମାନେ ଯାହା ଘଟିବ, ସମସ୍ତେ ଜାଣନ୍ତି। ମାତ୍ର ସତକଥା କହିଲେ, ମୁଣ୍ଡ ଯାଉଚି। ତେଣୁ ସତ କହି ଲାଭ କିଛି ନାହିଁ; ବରଂ, ସତକୁ ଛପାଇ ଦେବାକୁ ହେବ; ମିଛ କହିବାକୁ ହେବ। ଆମେ କହିବା ଯେ, ଆମ ଏ ସମ୍ରାଟ୍ ବଞ୍ଚିବେ ଅନେକ ବର୍ଷ। ଆଉ ରୁସ୍ତମ୍ ଏଇ ନିକଟରେ ମରିବେ।"

ସଭିଙ୍କ ମଧ୍ୟରେ ଗୋଟେ ଧୀର ଗୁଞ୍ଜରଣ ଖେଳିଗଲା। ସମସ୍ତେ ଏ କଥାକୁ ସ୍ୱାଗତ ଜଣାଇଲେ।

ତା'ପରେ ଆଫ୍ରାସିୟାବ୍‌ଙ୍କୁ ସେମାନେ ଭେଟିଲେ। ଯେ ପ୍ରକାର ସେମାନେ ଠିକ୍ କରିଥିଲେ, ସେଇ କଥା କହିଲେ। ଆଫ୍ରାସିୟାବ୍

ଖୁବ୍ ଖୁସି ହେଲେ । ସେତିକିରେ ଅବଶ୍ୟ ସେ ସନ୍ତୁଷ୍ଟ ହେଲେନି । ସେ ଜାଣିବାକୁ ଚାହିଁଲେ, ରୁସ୍ତମ୍ କିପରି ମରିବେ । ଏଥିରେ ବିଦ୍ୱାନ୍ ଲୋକମାନେ ପୁଣି ଏକାଠି ହେଲେ । ଠିକିବାଲାଗି ସେମାନେ ଉପାୟ ଚିନ୍ତିବାରେ ଲାଗିଗଲେ । ସମ୍ରାଟ୍‌ଙ୍କୁ ଜଣାଇଲେ, ରୁସ୍ତମ୍ ଏକ ଭୟଙ୍କର ଯୁଦ୍ଧରେ ଖଣ୍ଡିଆଖାବରା ହେଇ ମରିବେ ।

ଏକଥା ଶୁଣି ତୁରାନ୍‌ର ସେଇ ଗର୍ବୀ ସମ୍ରାଟ୍ ଆଉ ସ୍ଥିର ହେଇ ବସି ରହିଲେ ନାହିଁ । ସେ ତାଙ୍କର ସେନାଦଳ ସାଜିଲେ । ଠିକ୍ କଲେ ପାରସ୍ୟ ଉପରେ ଧାପଦେବେ ।

ଏଥର ଶେଷବେଳ ଆସିଗଲା । ରୁସ୍ତମ୍ ଭୀଷଣଭାବେ ଲଢ଼ିଲେ । ତୁରାନ୍‌ର ସୈନ୍ୟମାନେ ପୂରାପୂରି ହାରିଲେ । ସମ୍ରାଟ୍ ଆଫ୍ରାସିୟାବ୍‌ଙ୍କୁ ଲୁହା ଶିକୁଳିରେ ବନ୍ଧାଗଲା । ତାହାଙ୍କୁ କାଇକାଉସ୍‌ଙ୍କ ପାଖକୁ ଘୋଷାରି ଘୋଷାରି ନିଆଗଲା ଓ ସେଇଠି ପାରସ୍ୟ ସମ୍ରାଟ୍‌ଙ୍କ ସାମନାରେ ହତ୍ୟା କରାଗଲା ।

---

ସ୍କୁଲ ଛାତ୍ରଛାତ୍ରୀଙ୍କର ଅତି ପ୍ରିୟ ବହି

# ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

ବିଶ୍ୱବିଖ୍ୟାତ ଲେଖକମାନଙ୍କ ବହିର ଓଡ଼ିଆ ସାରାନୁବାଦ ସୁଲଭ ମୂଲ୍ୟରେ ସଂଗ୍ରହ କରି ପିଲାମାନଙ୍କୁ ପଢ଼ିବାକୁ ଦେଇ ସେମାନଙ୍କ ପଠନ ପ୍ରବୃତ୍ତି ବୃଦ୍ଧି କରନ୍ତୁ ।

| | |
|---|---|
| ଚାର୍ଲସ୍ ଡିକେନ୍ସ | ଥୋମାସ୍ ହାର୍ଡି |
| ଆଲେକଜାଣ୍ଡର ଡୁମାଁ | ଡାନିଏଲ୍ ଡିଫୋ |
| ୱାଲଟର୍ ସ୍କଟ୍ | ବ୍ଲାକ୍‌ମୋର୍ |
| ଭିକ୍ଟର ହ୍ୟୁଗୋ | ଜର୍ଜ ଇଲିଅଟ |
| ଏଚ୍. ରାଇଡର୍ ହାଗାର୍ଡ | ସେକ୍ସପିଅର |
| ଲର୍ଡ ଲିଟନ୍ | ଲିଓ ଟଲଷ୍ଟୟ |
| ମାର୍କ ଟୋଏନ୍ | ଚେକଭ୍ |
| ଚାରଲୋଟ୍ ବ୍ରଣ୍ଟେ | ହୋମର୍ |
| ଜୁଲ ଭାର୍ଣ୍ଣ | ଗର୍କି |
| ଜୋନାଥନ୍ ସ୍ୱିଫଟ୍ | ମୋପାସାଁ |
| ଆଣ୍ଟୋନି ହୋପ୍ | ଗ୍ରୀମସ୍ |
| ଆର୍. ଏଲ୍. ଷ୍ଟିଭେନ୍‌ସନ | ଆଣ୍ଡରସନ |
| ୱାଶିଂଟନ୍ ଇରଭିଙ୍ଗ | ବଙ୍କିମଚନ୍ଦ୍ର |
| ଆର୍. ଏମ୍. ବାଲାଣ୍ଟାଇନ | ଶରତ୍‌ଚନ୍ଦ୍ର |
| ଏଚ୍. ଜି ୱେଲସ୍ | କାଳିଦାସ |
| ଅଲିଭର୍ ଗୋଲଡ୍‌ସ୍ମିଥ | ଶୂଦ୍ରକ |
| ଉଇଲିୟମ୍ ଥାକେରି | ପ୍ରେମଚାନ୍ଦ |
| ଆର୍. ସବାଟିନି | ଫକୀରମୋହନ |
| ସରଭେଣ୍ଟିସ୍ | ଜାତକ କାହାଣୀ |
| ଜେନ୍ ଅଷ୍ଟିନ୍ | ମହାଭାରତ କାହାଣୀ |
| ଯୋଶେଫ୍ କୋନାର୍ଡ | ରାମାୟଣ କାହାଣୀ |
| ଆର୍ଥର୍ କୋନାନ୍‌ଡୟଲ | କଥାସରିତସାଗର |
| ଇଲକି କୋଲିନସ | ହିତୋପଦେଶ କାହାଣୀ |
| ଓ. ଏ. ହେନ୍ରୀ | ପଞ୍ଚତନ୍ତ୍ର କାହାଣୀ |

ପ୍ରକାଶକ : ଗ୍ର ନ୍ଥ ମ ନ୍ଦି ର, ବିନୋଦବିହାରୀ, କଟକ-୨